# ଜାମୁକୋଳି ଗଛ

ମୂଳ ରଚନା:
କୃଷ୍ଣ ଚନ୍ଦର



ଭାଷାନ୍ତର:
ଚନ୍ଦ୍ରଶେଖର ଦାସବର୍ମା

# ଜାମୁକୋଳି ଗଛ

ମୂଳ ହିନ୍ଦୀ ରଚନା : ୬ କୃଷ୍ଣ ଚନ୍ଦର
ଓଡ଼ିଆ ରୂପାନ୍ତର : ଶ୍ରୀ ଚନ୍ଦ୍ରଶେଖର ଦାସବର୍ମା



ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୨

# ଜାମୁକୋଳି ଗଛ

ମୂଳ ରଚନା : ୰ କୃଷ୍ଣ ଚନ୍ଦର

ଓଡ଼ିଆ ରୂପାନ୍ତର :
ଶ୍ରୀ ଚନ୍ଦ୍ରଶେଖର ଦାସ ବର୍ମା
କନକ ନିବାସ
ଥୋରିଆ ସାହି-କଟକ-୧

ପ୍ରକାଶକ : ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର,
ବିନୋଦବିହାରୀ, କଟକ-୨
ପ୍ରକାଶ ସମୟ : ଜାନୁୟାରୀ-୧୯୮୬

ପ୍ରଚ୍ଛଦ : ଶିବ ପାଣିଗ୍ରାହୀ

ମୁଦ୍ରଣ : ରାଧାନାଥ କୋ-ଅ: ପ୍ରେସ୍
ବାଲୁବଜାର, କଟକ-୨

ମୂଲ୍ୟ : ବାର ଟଙ୍କା ପଚାଶ ପଇସା ମାତ୍ର

**JAMUKOLI GACHHA**

ORGINAL HINDI SCRIPT

*Written by* :
**Late Krushna Chandar**

*Translated by* :
**Sri Chandra Sekhar Das Burma**
Kanak Nivas
Thoria Sabi, Cuttack-1

*Published by* :
**Gobind Charan Patra**
Orissa Book Store
Cuttack-2
First Edition : January-1986
Cover : **Siba Panigrahi**

Printer : **R. N. Co-operative Press**
Balubazar, Cuttack-2

Price : Rs. 12-50

# ନିଜ ବିଷୟରେ ପଦେ

ଅନୁବାଦ ସାହିତ୍ୟ ବିଷୟରେ କହିବାକୁ ଗଲେ ମୋତେ କେମିତି କେମିତି ଲାଗେ । ମୁଁ ମନେ ମନେ ଭାବେ ମୌଳିକ ଗଳ୍ପ ଲେଖିବାରେ ଯେଉଁ ସାର୍ଥକତା ଅଛି ବା ତୃପ୍ତି ଅଛି, ଅନୁବାଦ କରିବାରେ ବୋଧହୁଏ ସେତିକ ମିଳେ ନାହିଁ । କିନ୍ତୁ ଉର୍ଦ୍ଦୁ ସାହିତ୍ୟ ଜଗତର ଜଣେ ପ୍ରସିଦ୍ଧ ବ୍ୟଙ୍ଗକାର ୬ କୃଷ୍ଣ ଚନ୍ଦରଙ୍କର କିଛି ହିନ୍ଦୀ ରଚନା ପଢ଼ିଲାପରେ, ମୁଁ ଭାବିଲି ଏଗୁଡ଼ିକୁ ଯଦି ଅନୁବାଦ କରି ଓଡ଼ିଆ ପାଠକଙ୍କ ପାଖରେ ପହଞ୍ଚାଇ ହୁଅନ୍ତା, ତେବେ ଓଡ଼ିଆ ପାଠକମାନେ ଏକ ଭିନ୍ନ ସ୍ୱାଦର ଗପ ପାଠ କରିବାକୁ ସୁଯୋଗ ପାଆନ୍ତେ, ଯାହାକି ଓଡ଼ିଆ ଗଳ୍ପ ସାହିତ୍ୟରେ ଖୁବ୍ କମ ଦେଖିବାକୁ ମିଳେ । ଏଣୁ ମୁଁ ଗଳ୍ପ ଗୁଡ଼ିକର ସଫଳ ଅନୁବାଦ କରିଛି କି ନାହିଁ, ଏହାର ବିଚାର କରିବେ ଆପଣମାନେ ।

ଜାମୁକୋଳି ଗଛ ୬ କୃଷ୍ଣ ଚନ୍ଦରଙ୍କ ଏକ ଶ୍ରେଷ୍ଠ ହିନ୍ଦୀ ରଚନା କହିଲେ ଅତ୍ୟୁକ୍ତି ହେବ ନାହିଁ । ବ୍ୟଙ୍ଗ ସାହିତ୍ୟରେ ୬ କୃଷ୍ଣ ଚନ୍ଦରଙ୍କର ଦକ୍ଷତା ଅତୁଳନୀୟ । ଏହି 'ଜାମୁକୋଳି ଗଛ' ଗଳ୍ପ ଗ୍ରନ୍ଥଟି ବିଭିନ୍ନ ଭାରତୀୟ ଭାଷାରେ ଅନୁଦିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଛି । ଏ ଭଳି ଏକ ଗଳ୍ପ ଗ୍ରନ୍ଥର ଓଡ଼ିଆ ଅନୁବାଦ କରିବାକୁ ମୁଁ ପ୍ରୟାସ କରିଛି ମାତ୍ର ।

ଓଡ଼ିଶା ବୁକ୍‌ଷ୍ଟୋରର ସତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ଗୋବିନ୍ଦ ଚରଣ ପାତ୍ର ମୋର ଏ ବହିଟିକୁ ଓଡ଼ିଆ ପାଠକମାନଙ୍କ ଦୃଷ୍ଟିକୁ ଆଣିବାପାଇଁ ଯେଉଁ ସାହାଯ୍ୟ କରିଛନ୍ତି ତାହା ଭୁଲିବାର ନୁହେଁ ।

ଏ ବହିଟିର ପ୍ରଚ୍ଛଦ ଆଙ୍କିଛନ୍ତି ମୋର ବନ୍ଧୁ ଶ୍ରୀଯୁକ୍ତ ଶିବ ପାଣିଗ୍ରାହୀ । ତାଙ୍କ ପାଖରେ ମୁଁ କୃତଜ୍ଞ । ରାଧାନାଥ କୋ-ଅପରେଟିଭ ପ୍ରେସ ଏହି ବହିଟିର ମୁଦ୍ରଣ ଭାର ନେଇଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଦେଉଛି ।

ପରିଶେଷରେ 'ଝଙ୍କାର', 'ଜୀବନରଂଗ', 'ଅଧୁନା' 'ଗୋକର୍ଣ୍ଣିକାର' ସମ୍ପାଦକଙ୍କୁ ମୁଁ ସାଧୁବାଦ ଜଣାଉଛି । କାରଣ ସେଇମାନେ ହିଁ ବହିଟିର ଅଧିକାଂଶ ଗଳ୍ପମାନଙ୍କର ଅନୁବାଦକୁ ସେମାନଙ୍କ ବହୁମୂଲ୍ୟ ପତ୍ରିକାରେ ସ୍ଥାନ ଦେଇ ପାଠକମାନଙ୍କ ଦୃଷ୍ଟିକୁ ଆଣିଥିଲେ ।

ଆଶାକରେ ସାହିତ୍ୟିକ ବନ୍ଧୁମାନେ ଏହି ଗଳ୍ପ ଗ୍ରନ୍ଥ ପାଠକରି ତା'ର ସ୍ୱାଦ ଉପଭୋଗ କରିବେ ।

**ଚନ୍ଦ୍ରଶେଖର ଦାଶବର୍ମା**

# ଅନାବଶ୍ୟକ ମୁଖଶାଳା

ଦେଉଳ ଭିତରେ ପ୍ରବେଶ କରି ବିଗ୍ରହଙ୍କୁ ଦର୍ଶନ କରିବାକୁ ଚାଲିବେଳେ ମୁଖଶାଳାର ଆବଶ୍ୟକତା ସତେ କଣ ଏତେ ବେଶୀ ଅନୁଭୂତ ହୁଏ ? ତଥାପି ମୁଖଶାଳା ତ ଥାଏ । ବିଗ୍ରହଙ୍କୁ ଦର୍ଶନ ନ କରି କେବଳ ମୁଖଶାଳାଟିକୁ ଦେଖି କେହି ଭକ୍ତ ବା ଆଗ୍ରହୀ ବ୍ୟକ୍ତି ଫେରି ଆସନ୍ତି ନାହିଁ । ତଥାପି ମୁଖଶାଳାର ଅସ୍ତିତ୍ୱକୁ ଅସ୍ୱୀକାର କରିହୁଏ ନାହିଁ ।

ସେମିତି କୌଣସି ଗ୍ରନ୍ଥ ବା ସଙ୍କଳନର ମୁଖଶାଳା, ମୁଖବନ୍ଧ, ଭୂମିକା, ପ୍ରାକ୍-କଥନ, ଉପୋଦ୍‌ଘାତ କିମ୍ବା ଉପକ୍ରମଣିକା ଇତ୍ୟାଦିର ଆବଶ୍ୟକତା ଯଦିଓ ବିଶେଷ କିମ୍ବା ଆଦୌ ନାହିଁ, ତଥାପି ଅଙ୍ଗ-ଶୋଭା ଅଥବା ଗ୍ରନ୍ଥ ପରିଚିତ ପାଇଁ ଏହାର ପ୍ରୟୋଜନକୁ ନିଷ୍ପ୍ରୟୋଜନ କୁହାଯାଇ ନ ପାରେ ।

ଗାଳ୍ପିକ ଶ୍ରୀ ଚନ୍ଦ୍ରଶେଖର ଦାସବର୍ମାଙ୍କର ଗଳ୍ପଗୁଡ଼ିକୁ ପାଠକ ଆଗ୍ରହର ସହିତ ପାଠକରେ । କାରଣ ଗଳ୍ପଗୁଡ଼ିକର ଭାଷା, ଭାବ ଓ ଶୈଳୀ ପାଠକକୁ ଆକୃଷ୍ଟ କରିଥାଏ । ଇହା ହେଲା ତାଙ୍କର ନିଜସ୍ୱ ଗଳ୍ପ ସୃଷ୍ଟି ସମ୍ପର୍କରେ ମତ । କିନ୍ତୁ ଅନୁବାଦରେ ମଧ୍ୟ ତାଙ୍କର ବୈଶିଷ୍ଟ୍ୟ ବାରିହୁଏ । ଏଇ ଯେଉଁ ସଙ୍କଳନଟି ସଦ୍ୟ ପ୍ରକାଶ ପାଉଛି, ତାହା ତାଙ୍କର ଅନୁବାଦ-ଗଳ୍ପ ସଙ୍କଳନ । ଏହି ଗଳ୍ପଗୁଡ଼ିକୁ ସେ ହିନ୍ଦୀ ଭାଷାରୁ ଅନୁବାଦ କରିଛନ୍ତି । ଗଳ୍ପ ଅନୁବାଦ ଏଇ ତାଙ୍କର ପ୍ରଥମ ବୋଲି ସେ ସ୍ୱୀକାର କରନ୍ତି ।

ପ୍ରଥମ ପ୍ରଚେଷ୍ଟା ହେଲେ ବି, ଅନୁବାଦ ତାଙ୍କ ହାତରେ ଉତ୍ତମ ରୂପେ ଉତୁରିଛି ବୋଲି କହିବାକୁ ହେବ । କେବଳ ଆକ୍ଷରିକ ବା ପାଙ୍‌କ୍ତିକ ଅନୁବାଦ ବା ଭାଷାନ୍ତର କରିଦେଲେ, ତାହା ସେତେ ସୁଖପାଠ୍ୟ ହୁଏନାହିଁ; ପାଠକକୁ ସେତେ ଆମୋଦ ଦେବାରେ ସକ୍ଷମ ହୁଏନାହିଁ । ଭାଷାନ୍ତର କରି ତାହାକୁ ପରିବେଷଣ କରିବାରେ ମଧ୍ୟ ବାହାଦୁରି ବା ହାତ କୌଶଳ ରହିଛି । ଅନୁବାଦରେ ଯଦି ସ୍ୱକୀୟତା, ସ୍ୱତନ୍ତ୍ରତା ନାହିଁ; ତେବେ ତାହା ପାଠକ ମନକୁ ସ୍ପର୍ଶ କରିବ କାହିଁକି ? କିନ୍ତୁ ଇଂଜିନିୟର ଦାସବର୍ମାଙ୍କର ଅନୁବାଦରେ ସେ ଅଭାବ ପରିଲକ୍ଷିତ ହୁଏ ନାହିଁ; ଯେହେତୁ ସେ ଜଣେ କୁଶଳୀ ଯନ୍ତ୍ରୀ—ଗଳ୍ପ-ଗମ୍ବୁଜ ଗଢ଼ିବାରେ ମଧ୍ୟ । ଅନୁବାଦରେ ଭାଷାର ସାବଲୀଳତା ପରିସ୍ଫୁଟ । ଯଦିଓ ଏହା ଅନୁବାଦ; କିନ୍ତୁ ମୌଳିକ ଗଳ୍ପର ଭ୍ରମ ଜନ୍ମାଏ ।

କିଷନ୍ ଚନ୍ଦର୍ ହିନ୍ଦୀ ସାହିତ୍ୟର ଜଣେ ପ୍ରଖ୍ୟାତ ଗାଳ୍ପିକ ଓ ଔପନ୍ୟାସିକ । ତାଙ୍କର ଲେଖା ଅତ୍ୟନ୍ତ ବଳିଷ୍ଠ ଓ ହୃଦୟଗ୍ରାହୀ । ଲେଖାର ଭାଷା, ଶୈଳୀ ଓ ଭାବ ପାଠକକୁ ବିମୁଗ୍ଧ, ବିମୋହିତ କରିଥାଏ । କାରଣ ତାଙ୍କ ଲେଖାରେ ଅଛି ଅନୁଭବ, ଅନୁଭୂତିର ଆକର୍ଷଣ ଓ ତାହା ପ୍ରାଣ-ପ୍ରାଚୁର୍ଯ୍ୟଭରା । ଦୁନିଆର ଚଳନ୍ତିପ୍ରଚଳିତ ଘଟଣାଗୁଡ଼ିକ ତାଙ୍କ ଲେଖାର ବିଷୟବସ୍ତୁ, ଉପାଦାନ । ସେଥିରେ ବାସ୍ତବତା, ଅକୃତ୍ରିମତା ଓ ଅକପଟତା ଯେମିତି ଅଛି, ଅଛି ସେମିତି ମାନବିକତା ଓ ଦରଦୀ ହୃଦୟର ପ୍ରଚୁର ଆଭାସ । ଅହଂକାରୀ ବ୍ୟକ୍ତି ଓ ଖିଆଲି ସମାଜ ପ୍ରତି ତୀକ୍ଷ୍ଣ ଇଙ୍ଗିତ, ଶାଣିତ କଟାକ୍ଷ ଓ ତୀବ୍ର ସାଟାୟାର ଭରପୂର ।

ସେହି ପ୍ରଖ୍ୟାତ ହିନ୍ଦୀ କଥାକାର କିଷନ୍ ଚନ୍ଦର୍‌ଙ୍କର ଦଶୋଟି ଗଳ୍ପର ଓଡ଼ିଆ ଅନୁବାଦ କରି ପ୍ରକାଶ କରିଛନ୍ତି ଗାଳ୍ପିକ ଚନ୍ଦ୍ରଶେଖର । ଜୋତା, ମନ୍ତ୍ରୀଙ୍କ ବେମାରୀ, ନୂଆ ଘାସ—ପୁରୁଣା ଘାସ, ଚରିତ୍ରହୀନା : ହାରି, କେବଳ ଗୋଟିଏ କାର୍, ଜାମୁକୋଳି ଗଛ, କାଠକଣ୍ଢେଇ, ନୋ ଏଣ୍ଡ ଏସ୍, ମଙ୍ଗଳ ଗ୍ରହର ଯାତ୍ରୀ ଇତ୍ୟାଦି ଦଶଟି ଗଳ୍ପର ସଂକଳନର ନାମକରଣ 'ଜାମୁକୋଳି ଗଛ' । ଗୋଟିଏ ଜାମୁ ଗଛରେ କେତେ କୋଳି ଥିବ; କିନ୍ତୁ ସେଥିରୁ ମାତ୍ର ଦଶଟି କୋଳି ତୋଳି ଆମ ହାତରେ ଧରାଇ

ଦେଇଛନ୍ତି ଶ୍ରଦ୍ଧେୟ ଅନୁବାଦକ । ଏହି କୋଳଗୁଡ଼ିକ ସ୍ୱାଦଯୁକ୍ତ ଓ ରସସିକ୍ତ —ଗୃଖିଲେ ଜାଣିହୁଏ । ପାଠକବନ୍ଧୁବର୍ଗ ଏହାକୁ ଗୃଖି ରସାସ୍ୱାଦନ କରିବାକୁ ନିବେଦନ ।

କଟକ
ତା ୩୦ । ୧ । ୮୭

**ବିଚିତ୍ରାନନ୍ଦ କର**
ସଭାପତି, ଉତ୍କଳ ସାହିତ୍ୟ ସମାଜ

# ଗଛରେ ଚଢ଼ିବା ପୂର୍ବରୁ

ମନୁଷ୍ୟଙ୍କର ସମ୍ବନ୍ଧ କ୍ରମେ ସୀମିତ ହୋଇପଡ଼ୁଛି । ଗୋଟାଏ ଦେଶର ଲୋକେ ଅନ୍ୟ ଦେଶର ସାହିତ୍ୟ-ସଂସ୍କୃତିକୁ ଉଦାର ହୃଦୟରେ ସ୍ୱୀକାର କରିବାକୁ କୁଣ୍ଠାବୋଧ କରୁନାହାନ୍ତି । ବିଶ୍ୱଜନକୁ ଆତ୍ମସାତ୍ କରିବା ଆଜି ତା'ର ଲକ୍ଷ୍ୟ ।

ଠିକ୍ ଏଇଭଳି ପରିବେଶରେ ଆଖିଆଗକୁ ଆସେ ଅନୁବାଦ ସାହିତ୍ୟ । ଅବଶ୍ୟ ଏକଥା କୁହାଯାଇଛି ଯେ, 'ମଲ୍ ସିଂହଠାରୁ ଜୀଅନ୍ତା କୁକୁର ଅଧିକ ଶ୍ରେୟ' । ( The live dog is better than the dead lion. ) ତଥାପି ଅନୁବାଦ ମାଧ୍ୟମରେ ବିଶ୍ୱ ପରିକ୍ରମା କରିହୁଏ । ଗୋଟିଏ ଅଞ୍ଚଳର ଲୋକେ ଅନ୍ୟ ଅଞ୍ଚଳର ରୀତି ନୀତି ଚାଲିଚଳଣି ଜାଣିପାରନ୍ତି । ଯେଉଁଠି ବିଶ୍ୱଜନୀନତା ପ୍ରତିଫଳିତ ହୋଇଥାଏ, ତାହାର ସୁବାସ ସବୁଆଡ଼କୁ ଚହଟିଯାଏ ଏଇ ଅନୁବାଦ ମାଧ୍ୟମରେ ।

ଅନୁବାଦରେ ମୂଳ ଲେଖାର ରସସମ୍ପଦ, ଭାବବିନ୍ୟାସ ତଥା ଶୈଳୀକୁ ରକ୍ଷା କରାଯିବା ଦରକାର । ମାତ୍ର ଆକ୍ଷରିକ ଅନୁବାଦ ସର୍ବଦା ମୂଲ୍ୟହୀନ ଓ ଭୟଙ୍କର; ତେଣୁ ବର୍ଜନୀୟ । ସାର୍ଥକ ଅନୁବାଦ ରୂପାନ୍ତରିତ ଭାଷାରେ ପୁନର୍ଜନ୍ମ ଗ୍ରହଣ କରେ ଏବଂ ସେହି ଭାଷାର ସୃଷ୍ଟି ସମ୍ପଦରେ ପରିଣତ ହୋଇଯାଏ ।

ଅତଏବ ଅନୁବାଦ ଏକ କଷ୍ଟକର ବ୍ୟାପାର । ଏଭଳି ଏକ ବ୍ୟାପାରକୁ ଆଦରି ନେଇଛନ୍ତି କଥାକାର ଚନ୍ଦ୍ରଶେଖର ଦାସବର୍ମା । ସେ ଭଗଜାହ୍ନବୀର ଅମୃତ ପ୍ଳାବନରେ ଉତ୍କଳୀୟ ଜୀବନକୁ ପୂତ କରିବା ପାଇଁ ପ୍ରୟାସୀ । ଭାରତୀୟ ସାହିତ୍ୟରେ କୃଷ୍ଣ ଚନ୍ଦର୍ ଏକ ପରିଚିତ ନାମ । ତାଙ୍କ ପ୍ରତିଭା ବହୁମୁଖୀ । ସେ ଉଭୟ ଉର୍ଦ୍ଦୁ ଓ ହିନ୍ଦୀ ସାହିତ୍ୟକାର ଭାବରେ ଭାରତୀୟ ସାହିତ୍ୟ-ଜଗତରେ ଖ୍ୟାତିପ୍ରାପ୍ତ । 'ଏକ୍ ଜାମୁନ୍ କା ପେଡ୍' ତାଙ୍କର ଏକ ବହୁଚର୍ଚ୍ଚିତ ଗଳ୍ପ । ଏହା ପ୍ରାୟ ଅଧିକାଂଶ ଭାରତୀୟ ଭାଷା ଓ ବହୁ ବିଦେଶୀ ଭାଷାରେ ଅନୂଦିତ ।

ମନୁଷ୍ୟର ଦୈନନ୍ଦିନ କାର୍ଯ୍ୟକଳାପର ଏକ ଆତ୍ମିକ ସମୀକ୍ଷା ପ୍ରତି ମୁହୂର୍ତ୍ତରେ ଚାଲିଥାଏ ତା'ର ଅବଚେତନ ମନରେ । ଯାହାଫଳରେ ତାହାର କୃତକର୍ମ କୌଣସି ନା କୌଣସି ସମୟରେ ନିଜର ଅଜ୍ଞାତସାରରେ ଅନ୍ୟମାନଙ୍କ ଆଖିରେ ଧରାପଡ଼ିଯାଏ । ଲେଖକ ସାଧାରଣତଃ ଏହି ଦୁର୍ବଳତମ ମୁହୂର୍ତ୍ତର ସୁଯୋଗ ନିଏ ଓ ତାକୁ କେନ୍ଦ୍ରକରି ଗଢ଼େ ସୁନ୍ଦର ସୁନ୍ଦର ସୃଷ୍ଟି ସମ୍ଭାର । କୃଷ୍ଣ ଚନ୍ଦର୍ ତାଙ୍କର ଅଧିକାଂଶ ଗଳ୍ପରେ ହାସ୍ୟ-ବ୍ୟଙ୍ଗ ମାଧ୍ୟମରେ ଏହି ସତ୍ୟକୁ ଉଦ୍‌ଘାଟନ କରିଛନ୍ତି । ବ୍ୟଙ୍ଗଧର୍ମିତା ତାଙ୍କ ଗଳ୍ପର ପ୍ରାଣ । ହାସ୍ୟ-ରସିକତା ତାଙ୍କ ସୃଷ୍ଟିର ପୋଷାକ ।

ମୂଳ ସୃଷ୍ଟିର ସମସ୍ତ ମାଧୁର୍ଯ୍ୟ ଧରି ରଖିବାକୁ ଚେଷ୍ଟା କରିଛନ୍ତି ଶ୍ରୀଯୁକ୍ତ ଦାସବର୍ମା । ସେ ଅନୁବାଦ କଲାବେଳେ ମୂଳ ସୃଷ୍ଟିର ଖୁବ୍ ବିଶ୍ୱସ୍ତ ପାଲଟି ଯାଇଛନ୍ତି । 'ଜାମୁକୋଳି ଗଛ' ଗଳ୍ପଟି ଓଡ଼ିଆରେ ଏକାଧିକବାର ଅନୁବାଦ ହୋଇଥିଲେ ମଧ୍ୟ ତାଙ୍କର ଏହି ଲେଖାରେ ସ୍ୱାତନ୍ତ୍ର୍ୟ ରହିଛି । ପ୍ରକୃତରେ ଦେଖିବାକୁ ଗଲେ ତାଙ୍କ ଅନୁବାଦ ଅଧିକ ରସୋତ୍ତୀର୍ଣ୍ଣ ହୋଇ ପାରିଛି । ସର୍ବୋପରି ଏହା ଓଡ଼ିଆ ଭାଷାର ନିଜସ୍ୱ ସମ୍ପଦରେ ପରିଣତ ହୋଇଛି । ଭାଷା ଖୁବ୍ ସଂଯତ, ସାବଲୀଳ ଓ ସ୍ୱାଭାବିକ । ଯେପରିକି—
"ଏହାଦେଖି ମାଳିର ଅବସ୍ଥା କହିଲେ ନ ସରେ । ସେ ଦଉଡ଼ି ଦଉଡ଼ି ଚପରାଶି ପାଖକୁ ଗଲା, ଚପରାଶି ଦଉଡ଼ି ଦଉଡ଼ି କିରାଣି ପାଖକୁ ଗଲା, କିରାଣି ଦଉଡ଼ି ଦଉଡ଼ି ବଡ଼ବାବୁ ପାଖକୁ ଗଲା । ବଡ଼ବାବୁ ତତ୍‌କ୍ଷଣାତ୍ ବଗିଚାକୁ ଆସିଲେ । କ୍ଷଣକ ମଧ୍ୟରେ ଗଛଟିକୁ ଏବଂ ତଳେ ଚାପିହୋଇଥିବା

ଲୋକଟିକୁ ଦେଖିବା ପାଇଁ ଗଛ ଗୁରିପଟେ ଭିଡ଼ ଜମିବାକୁ ଲାଗିଲା ।”
ଗଳ୍ପଟିରେ ବ୍ୟୁରୋକ୍ରାଟିକ୍ ଶାସନ ପଦ୍ଧତିର ଏକ ନଗ୍ନ ଚିତ୍ର ଦିଆଯାଇଛି ।
ସେ ଚିତ୍ରକୁ ସ୍ପଷ୍ଟ ସାବଲୀଳ ଭାଷାରେ ଉପସ୍ଥାପିତ କରାଯାଇଥିବାରୁ ତାହା
ଅଧିକ ସ୍ୱାଦିଷ୍ଟ ହୋଇପାରିଛି । ଭାରତୀୟ ଶାସନକଳ କେମିତି ଫାଇଲ
ଗୃଷର ଶିକାର ହୋଇଛି, ତାହା ପ୍ରତ୍ୟେକ ଭାରତବାସୀ ଜାଣିବା ଦରକାର;
ସେଇଥିପାଇଁ ଏ ଗଳ୍ପର ଅନୁବାଦର ଆବଶ୍ୟକତା ଅନୁଭବ କରିଛନ୍ତି ସେ ।

‘ଜୋତା’ ଗଳ୍ପରେ ଲଳିତ ହାସ୍ୟର ମଧୁର ଝଙ୍କାର ଶୁଣିବାକୁ
ମିଳେ । ଅର୍ଥସର୍ବସ୍ୱ ସମାଜରେ ବ୍ୟକ୍ତି ନିଜକୁ ଉପର ପାହାଚରେ ଥୋଇବା
ପାଇଁ କିଭଳି ହୀନପ୍ରୟାସ କରୁଛି, ତାହା ଏଥିରେ ମର୍ମରିତ । ‘ମନ୍ତ୍ରୀଙ୍କ
ବେମାରି’ ଏକ ଭିନ୍ନ ଶୈଳୀର ଗଳ୍ପ । ଦେଶରେ ସମ୍ବାଦପତ୍ରମାନଙ୍କର
ଭୂମିକା ଏବଂ ଗଣତାନ୍ତ୍ରିକ ଶାସନ ପଦ୍ଧତିରେ ମନ୍ତ୍ରୀପ୍ରସଙ୍ଗ ବେଶ୍ ଚମତ୍କାର
ଭାବରେ ଉପସ୍ଥାପିତ କରାଯାଇଛି ।

ମୋଟ ଉପରେ ଦଶଟି ଅନୁଦିତ ଗଳ୍ପର ଗୋଟିଏ ସଫଳ ସଙ୍କଳନ
ହେଉଛି ‘ଜାମୁକୋଳି ଗଛ’ । ଏହି ଗଛଟି ମୃତ ନୁହେଁ, ଜୀବନ୍ତ । ଓଡ଼ିଆ
ପାଠକମାନଙ୍କ ପାଇଁ ଏହା ସବୁଜ ପତ୍ରଯୁକ୍ତ ମନୋହର ବୃକ୍ଷ ହେବ—ଏ
ବିଶ୍ୱାସ ମୋର ଅଛି । ଅନୁବାଦକ ତାହାଙ୍କ କର୍ମଶାଳାରେ ଯେଉଁ କେତୋଟି
ତ୍ରୁଟି ବିଚ୍ୟୁତି ଘୁଞ୍ଚ ଯାଇଛନ୍ତି, ସେଥିପାଇଁ ସେ ସହୃଦୟତା ପାଇବାକୁ ଆଶା
ରଖିଛନ୍ତି । ସେତକ ପାଇ ପାରିଲେ ତାଙ୍କର ଶ୍ରମ ସାର୍ଥକ ହେବ ।

**ଡକ୍ଟର ରତ୍ନାକର ଚଇନି**
୩୧ । ୧ । ୮୬

# ଜୋତା

ଡାଲି ରୋଡ଼୍‌ରେ ପ୍ରଥମେ ଯେଉଁ ସାତମହଲା କୋଠା ଦେଖିବାକୁ ମିଳେ ତାକୁ ଲାଗିକରି ଚାରିମହଲା କୋଠାର ଗୋଟେ ଲମ୍ବା ଧାଡ଼ି ବହୁତ ଦୂର ଲମ୍ବି ଯାଇଛି । ମୋ ବନ୍ଧୁ ଜଣକ ସାତମହଲା କୋଠା ପାଖରେ ଅଟକି ଯାଇ ମତେ କହିଲା, ଚାଇ ଦେଖ ! ଏଇ ସାତମହଲା କୋଠାର ବାହାରେ, ରାସ୍ତାର ସେପାଖେ ଥିବା ଜାମୁକୋଳି ଗଛ ତଳେ ଯେଉଁ ମୋଚିଟି ବସିଛି·· ।

"ହୁଁ..." ମୁଁ ଉତ୍ତର ଦେଲି ।

"ସେ ମୋଚିଟି ପାଞ୍ଚବର୍ଷ ପୂର୍ବେ ଏହି ସାତମହଲା କୋଠାର ମାଲିକ ଥିଲା ।"

"କିନ୍ତୁ କିପରି ?" ମୁଁ ମୋର ବନ୍ଧୁକୁ ପଚାରିଲି ।

"ଏକଥା ତମେ ସେ ମୋଚିକୁ ପଚାରି ବୁଝିପାର ।" ମୋର ବନ୍ଧୁ ମତେ କହିଲା ।

କିନ୍ତୁ ସେତେବେଳେ ଆଉ ପଚାରିବାର ସମୟ ନ ଥିଲା । ଆମେ ଦୁହେଁ ସେତେବେଳକୁ ଏକ ସାକ୍ଷାତକାର ପାଇଁ ସେହି ସାତମହଲା କୋଠାର ପାଞ୍ଚ-ମହଲାକୁ ଯାଉଥାଉ । ଯେତେବେଳେ ଦୁଇଜଣ ଯାକ ନିରାଶ ହୋଇ ସାକ୍ଷାତକାରରୁ ଫେରିଲୁ, ସେତେବେଳେ ବନ୍ଧୁଟି ମୋର ରାଗ ଏବଂ ଅଭିମାନରେ ମୋତେ ଅପେକ୍ଷା ନ କରି ଆଗରୁ ଚାଲିଯାଇଥିଲା । ସାମାନ୍ୟ ଦେଢ଼ଶହ ଟଙ୍କାର ଚାକିରି । ଏଥିପାଇଁ ଏତେ ମାନ-ଅଭିମାନ । ଅଗତ୍ୟା ମୋତେ ଏକା ଫେରିବାକୁ ପଡ଼ିଲା ।

ସାତମହଲା କୋଠାରୁ ବାହାରି ମୁଁ ଧୀରେ ଧୀରେ ମୋଚି ପାଖକୁ ଚାଲିଲି । ମୋଚିଟି କୋଠାଘର ଆଡ଼କୁ ପିଠିକରି ସାମନାରେ ତା'ର ଜୋତା ସିଲେଇ ଜିନିଷ ଥୋଇ ଗୁମ୍‌ସୁମ୍ ମନରେ ବସିଥିଲା । ଦେହ ଅଣ୍ଟା ପର୍ଯ୍ୟନ୍ତ ମୁକୁଳା ଥିଲା । ହୃଷ୍ଟପୁଷ୍ଟ ଶରୀର, ଶ୍ୟାମଳ ବର୍ଣ୍ଣ, ମୁଣ୍ଡରେ କେତୋଟି କୁଞ୍ଚୁକୁଞ୍ଚିଆ ବାଳ, ବେଶ୍ ଆକର୍ଷଣୀୟ ଦେଖାଯାଉଥିଲା ।

ଆଖି ଦୁଇଟି ତା'ର ଶ୍ଳେଟ ଶ୍ଳେଟ ମୁକ୍ତା ଭଳି ଚମକୁଥିଲା । ତା'ର ବେଶ-ଭୂଷାରୁ ସେ ଯେ କେବେ ଏ ସାତମହଲା କୋଠାର ମାଲିକ ହୋଇପାରେ, ଏ କଥା କଳ୍ପନାତୀତ ଥିଲା । ତା'ର ବ୍ୟକ୍ତିତ୍ୱରେ ବିଶେଷ କିଛି ଆକର୍ଷଣ ନ ଥିଲା । କେବଳ ତା'ର ଶରୀର ଖୁବ୍ ହୃଷ୍ଟପୁଷ୍ଟ ଥିଲା ଏବଂ ତା'ର ଶରୀରର ଚମଡ଼ା ନୂଆ ହୋଇ କିଣା ହୋଇଥିବା ଚମଡ଼ା ପରି ଚମକୁଥିଲା । ଏମିତିଆ ସ୍ୱାସ୍ଥ୍ୟବାନ ଲୋକ ତ ଏ ଦୁନିଆରେ ବହୁତ ଅଛନ୍ତି, କିନ୍ତୁ ସାତମହଲା କୋଠା କେତେଜଣଙ୍କର ଅଛି ?

"ପାଲିଶ୍ କମ୍ବା ମରାମତି ?" ଲୋକଟି ମତେ ପଚାରିଲା ।

ମୁଁ ଉତ୍ତର ଦେଲି, "ଦୁଇଟିଯାକ" ।

ମୋଚିଟି ମୋ' ଗୋଡ଼ରୁ ଜୋତା ଦୁଇଟି ଓହ୍ଲାଇ ଦେଲା ଏବଂ ଏପଟ ସେପଟ ଓଲଟାଇ ଭଲ ଭାବରେ ଦେଖିବାକୁ ଲାଗିଲା । ମୁଁ ଭାବିଲି ବନ୍ଧୁଟି ମୋର ମତେ ନିଶ୍ଚୟ ଧୋକା ଦେଇଛି । ପରକ୍ଷଣରେ ମୁଁ ଭାବିଲି, କଥାଟାକୁ ପଚାରି ଦେଲେ ବା କ୍ଷତି କ'ଣ ?

ମୁଁ ପଚାରିଲି, "ଶୁଣିଛି ତମେ କେବେ ଏ ସାତମହଲା କୋଠାର ମାଲିକ ଥିଲ ।"

ମୋଚିଟି ସହସା କୌଣସି ଉତ୍ତର ଦେଲା ନାହିଁ । ବଡ଼ ଯତ୍ନର ସହିତ ମୋ ଜୋତା ଦୁଇଟିକୁ ନିରୀକ୍ଷଣ କଲା । ଯେପରି କି ଜୋତା ଦୁଇଟିକୁ ଦେଖିବା ପରିବର୍ତ୍ତେ ସେଥିରୁ କିଛି ପଢ଼ିବାକୁ ଚେଷ୍ଟା କରୁଛି । ପୁଣି ସେ ନଜର ଉଠାଇ ମୋ ଚେହେରାକୁ ଭଲ ଭାବେ ଦେଖିଲା । ଜଣାପଡ଼ିଲା ଯେପରି ମୋ ଜୋତାର ଚମଡ଼ାରୁ କିଛି ପଢ଼ିଲା ପରେ ମୋ ଚେହେରାରୁ କିଛି ପଢ଼ିବା ପାଇଁ ସେ ଚେଷ୍ଟା କରୁଛି ।

ସେ କ'ଣ ଦେଖିଲା, କ'ଣ ପଢ଼ିଲା କେଜାଣି, ମତେ ଦେଖି ଆସ୍ତେ ହସିଲା ଏବଂ ପଚାରିଲା, "ତମେ ଏ ସହରକୁ ବୋଧେ ନୂଆ ଆସିଛ ?

ମୁଁ ଉତ୍ତର ଦେଲି, "ହଁ ଚାକିରି ଖୋଜିବାକୁ ଆସିଥିଲି ।"

"ଆଉ ଚାକିରି ମିଳିଲା ନାହିଁ," ମୋଚିଟି କହିଲା ।

"ହଁ, କିନ୍ତୁ ତମକୁ କିଏ କହିଲା ?" ମୁଁ ପଚାରିଲି । ମୋଚିଟି ଗୋଟିଏ ଛୋଟିଆ ପୁରୁଣା ଷ୍ଟୁଲଟିଏ ଆଣି ଜାମୁକୋଳି ଗଛର ଛାଇରେ ରଖିଦେଲା ଏବଂ ଜୋତାକୁ ଗୋଟିଏ କାଠର ନକଲି ଜୋତା ଭିତରେ ପୂରାଉ ପୂରାଉ ମତେ କହିଲା "ଏହି ଷ୍ଟୁଲ ଉପରେ ବସ ଏବଂ ଶୁଣ । ମୁଁ ତ ଏ ସବୁ ଇଆଡ଼ୁ ସିଆଡ଼ୁ ବାଜେ ଲୋକଙ୍କୁ ଶୁଣାଏ ନାହିଁ, ତେବେ ତମକୁ ନିଶ୍ଚେ ଶୁଣାଇବି···।"

"ମୁଁ ପିଲାଦିନରୁ ବୟାଳିଶ ବର୍ଷ ପର୍ଯ୍ୟନ୍ତ ଦୁଃଖର କାହାଣୀ ବର୍ଣ୍ଣନା କରିବି ନାହିଁ । କାରଣ ମଞ୍ଜିରୁ ଗଛ ହେବା ପର୍ଯ୍ୟନ୍ତ ସମୟ ଖୁବ୍ ଲମ୍ବା । ଏହି ସମୟ ମଧ୍ୟରେ ଗଛ ବହୁତ ପାପ କରେ ଓ ସେଇ ପାପର ବୋଝ ଗଛ ଉପରେ ପଡ଼େ ଏବଂ ଲୋକେ ତା' ଡାଳରେ ଆତ୍ମହତ୍ୟା କରନ୍ତି, ଡାକୁଦଳ ନିଜର ଚୋରି ଡକାୟତି ମଧ୍ୟ ତା'ର ସାହାଯ୍ୟରେ କରନ୍ତି, ପକ୍ଷୀମାନେ ନିଜର ବସା ମଧ୍ୟ ସେଇଥିରେ ବାନ୍ଧନ୍ତି ଏବଂ ସାପ ମଧ୍ୟ ସେଇ ଗଛରୁ ପକ୍ଷୀମାନଙ୍କର ଅଣ୍ଡା ଚୋରି କରେ । ପୃଥିବୀରୁ ଆକାଶ ପର୍ଯ୍ୟନ୍ତ ଯାତ୍ରା କରୁ କରୁ ହରି କୋମଳର ଚମଡ଼ା ମୋଟା ହୋଇଯାଏ । ଏହି କାହାଣୀ ବହୁତ ଲମ୍ବା···ଏହାକୁ ଶୁଣିବା ପାଇଁ ନା ତୁମ ପାଖରେ ସମୟ ହେବ ନା ମୋ ପାଖରେ ଶୁଣାଇବା ପାଇଁ ସମୟ ହେବ ?"

ମୋଚର ସ୍ୱର ବଦଳି ଯାଇଥିଲା । ମୋ ମୁହଁର ରଙ୍ଗ ବଦଳି ଯାଇଥିଲା ! ମୁଁ ଚୁଲ୍‌ଟିକୁ ତା ପାଖକୁ ଟାଣି ଆଣିଲି, ଯେପରିକି ସେ କହୁଥିବା ପ୍ରତିଟି ଶବ୍ଦ ମୁଁ ଶୁଣି ପାରିବି ।

"ମୁଁ ତମକୁ ମୋର ସେଇ ପୁରୁଣା ଜୀବନର ଶେଷ ଘଟଣା ଶୁଣାଇବି, ଯେତେବେଳେ ମୋତେ ବୟାଳିଶ ବର୍ଷ ହୋଇଥିଲା ଏବଂ ମୁଁ ଜୀବନର ଜୁଆର-ଭଟ୍ଟାରୁ ଉଠି ଠିକା ପରମିଟ, କୋଟା, ଜୁଆ, ବେଇମାନି, ଲାଞ୍ଚ, ଧମକ, ଖୋସାମଦ, ମିଥ୍ୟା, ପ୍ରଶଂସା ଇତ୍ୟାଦିର ବିଭିନ୍ନ ଉପାୟ ପ୍ରୟୋଗ କରି ଦଶ କୋଟି ଟଙ୍କା ରୋଜଗାର କରିଥିଲି । ଏ କିଛି ସାଧାରଣ କଥା ନୁହେଁ ବା ଏତେ ଟଙ୍କା ଚୋଟେକାଟେର ବେଇମାନି ଦ୍ୱାରା ହାସଲ ହୋଇପାରେନା । ଏଥିପାଇଁ ଉପଯୁକ୍ତ ବୁଦ୍ଧି ଦରକାର ହୁଏ । କିନ୍ତୁ ଏ ବେଇମାନିର କାମକୁ ମଧ୍ୟ ବୁଦ୍ଧିର ସହିତ କରିବାକୁ ପଡ଼େ ଏବଂ ବହୁ ମିଛ କଥା କହି ତାକୁ ସତରେ ପ୍ରମାଣ କରିବାକୁ ପଡ଼େ, ତୁମେ ଏସବୁ ବୁଝିପାରିବ ନାହିଁ । ଦେଢ଼ଶହ ଟଙ୍କାର ଚାକିରି ଖୋଜୁଥିବା ଲୋକ ଏ ସବୁ ବୁଝିପାରିବ ନାହିଁ । ଏତେଗୁଡ଼ାଏ ଟଙ୍କା ହାସଲ କରିବାପାଇଁ ମିଛ, ସତ, ଚତୁରତା, ନିଷ୍ଠୁରତା, ପାପ ଏବଂ ପୁଣ୍ୟ—ଏ ସବୁ ଆଇନଷ୍ଟାଇନଙ୍କ ସାପେକ୍ଷତା ପରି ପ୍ରୟୋଗ କରିବାକୁ ପଡ଼େ ।

ମୁଁ ଚମକି ପଡ଼ିଲି । ମୋଚ ମୋ କୋଟାର ତଳି ଅଂଶ ଓଦା କଲା ।

"କିନ୍ତୁ ମୁଁ କେବେ ହରି କୋମଳ ଥିଲି । ମୋର ଶରୀର ବହୁତ କଅଁଳ ଥିଲା ଏବଂ ସାମାନ୍ୟ ଟିକିଏ ବେଇମାନି ମତେ ଗରମ ପବନ ପରି ଜଣା ଯାଉଥିଲା । ଭୋରର ଶୀତଳ ପବନ ମୋ ପାଇଁ ଆକାଶର ସୁଗନ୍ଧ ଆଣି ଦେଉଥିଲା । ସେତେବେଳେ ମୁଁ ଜାଣି ନଥିଲି ଆକାଶକୁ ମଧ୍ୟ ଧ୍ୟାନର ସହ ଅନେଇବା ଏକ ପାପ ।

ବୟାଳିଶ ବର୍ଷ ହେଲା ବେଳକୁ ସୁଖର ପ୍ରାଚୁର୍ଯ୍ୟରେ ମୋର ଚେହେରା ବଦଳି ଯାଇଥିଲା । ସେତେବେଳକୁ ମୋ ଉପରେ ଗରମ ପବନର ପ୍ରଭାବ କିମ୍ବା ସୁଗନ୍ଧର ପ୍ରଭାବ କିଛି ବି ପଡ଼ୁ ନ ଥିଲା । ବୟାଳିଶ ବର୍ଷ ବେଳକୁ ମୁଁ ଦଶକୋଟି ଟଙ୍କା ଉପାର୍ଜନ କରି ସାରିଥିଲି ଏବଂ ତା ସହିତ ଏ ସାତମହଲା କୋଠାଘର ମଧ୍ୟ । ଆହୁରି ବହୁତ କିଛି ଜମେଇଥିଲି । ମନ୍ତ୍ରୀମାନେ ମତେ ପାର୍ଟି ନେବାପାଇଁ ଉଡ଼ାଜାହାଜ ପଡ଼ିଆକୁ ଆସୁଥିଲେ ! ମୁଁ ଭାବୁଥିଲି ଏ ଦୁନିଆର ସବୁ କିଛି ମୁଁ ଖରିଦ୍ କରି ନେଇପାରେ । ଆଉ ଯେତେବେଳେ ଦଶକୋଟି ଟଙ୍କା ଅଣ୍ଟା ଭିତରେ ପୂରାଇ ମୁଁ ଦୁନିଆ କିଣିବାକୁ ବାହାରେ, ସେତେବେଳେ ଜଣାପଡ଼ିଲା ଯେ ଏଠାରେ ସବୁକିଛି ବିକ୍ରି ହୋଇପାରେ, ରାଜ୍ୟ, ରାଜମାଠ, ଧର୍ମ, ସଭ୍ୟତା, ସମ୍ମାନ, ବନ୍ଧୁତା, ସୌନ୍ଦର୍ଯ୍ୟ, ପ୍ରେମ, ଜ୍ଞାନ, ଶାସ୍ତ୍ର, କବିତା ଏବଂ ଏସବୁ ଜିନିଷ ଉଚିତ ମୂଲ୍ୟରେ ମଧ୍ୟ ବିକା ଯାଇପାରେ । ଦାମ୍ ଲଗାଇଯାଅ, ଜିନିଷ ଉଠାଇ ନିଅ···।

ଏ ସବୁ ଜାଣିସାରିଲା ପରେ ମୋର ମୁଣ୍ଡ ଖରାପ ହୋଇଗଲା ଏବଂ ମୁଁ ମନେକଲି ଏ ସାରା ଦୁନିଆ ମଧ୍ୟ ମୋ ଗୋଡ଼ର ଜୋତା ତଳେ ।

"ମୋର ବନ୍ଧୁ ରାମଦୟାଲ ତ୍ରିପାଠୀ ମତେ ବହୁତ ବୁଝାଇଲା ଏବଂ କହିଲା, ତୁମେ ଏ ଦୁନିଆକୁ ସବୁବେଳେ ଭୁଲ ବୁଝି ଆସିଲ । ଜୁଆ, କୋଟା, ପରମିଟ, ଲାଇସେନ୍ସ ଏବଂ ରେଷ୍ଟଲାଣ ଏସବୁ ତମକୁ ଅନ୍ଧ କରିଦେଇଛି. ଜୀବନର ସଭ୍ୟତାଠୁ ତମେ ଦୂରେଇ ଯାଇଛ । ସମସ୍ତଙ୍କୁ ତୁମେ ନିଜଭଳିଆ ସ୍ୱାର୍ଥପର ମନେ କରୁଛ । ଆଜିକାଲି ଏ ଦୁନିଆରେ ଏମିତି ଅନେକ ଲୋକ ଅଛନ୍ତି, ଯେଉଁ-ମାନେ ତମର ଟଙ୍କାକୁ ଖାତିର କରନ୍ତି ନାହିଁ ଆଉ ତମକୁ ଓ ତମ ଟଙ୍କାକୁ ମଧ୍ୟ ଜୋତା ତଳେ ରଖନ୍ତି ।"

ମୁଁ ଜୋର୍‌ରେ ହସିଲି । ମୋତେ ହସିବାର ଦେଖି ତ୍ରିପାଠୀର ଚେହେରା ଜଳିବାରେ ଲାଗିଲା । ସେ କହିଲା, "ମତେ ଦେଖ ! ମୁଁ ତମର ଦଶକୋଟି ଟଙ୍କାରୁ କେବେହେଲେ ପଇସାଟିଏ ମାଗିଛି କି ?"

ମୁଁ କହିଲି, "ତୁମେ ନିହାତି ବୋକା ।"

"ମୋ ଭଳିଆ ବୋକା ଏବଂ ସ୍ୱାଭିମାନୀ ଲୋକ ଏ ସହରରେ ନିଶ୍ଚୟ ଲକ୍ଷେରୁ କମ୍ ନ ଥିବେ ।

"ମୋର ଜମାରୁ ବିଶ୍ୱାସ ହେଉନି" ମୁଁ କହିଲି ।

"ପରୀକ୍ଷା କରି ଦେଖିପାର," ତ୍ରିପାଠୀ କହିଲା । ମତେ ମଧ୍ୟ ପରୀକ୍ଷା କରିବାପାଇଁ ସହସା ଗୋଟିଏ ଉପାୟ ଜୁଟିଗଲା, ପକେଟରେ ଗରମ ଗରମ

ଟଙ୍କା, ଦିମାକ ମଧ୍ୟ ଗରମ । ମୁଁ ତତ୍‌କ୍ଷଣାତ ଷ୍ଟେନୋକୁ ଡାକି ସମ୍ବାଦପତ୍ରରେ ଗୋଟିଏ ବିଜ୍ଞାପନ ଦେବାପାଇଁ କହିଲି, ଯାହାକି ପରଦିନ "ଟାଇମସ୍" ସମ୍ବାଦ ପତ୍ରରେ ବାହାରିଗଲା : "ଜୋତା ଖାଇଲାବାଲାଙ୍କୁ ପାଞ୍ଚଶହ ଟଙ୍କା ପୁରସ୍କାର । ଯେଉଁ ଲୋକ ବିଜ୍ଞାପନଦାତାଙ୍କ ଠାରୁ ଦଶ ଜୋତା ଖାଇବ, ସେ ପାଞ୍ଚଶହ ଟଙ୍କା ପୁରସ୍କାର ପାଇବ । ଜୋତା ଖାଇବାର ସମୟ ହେଲା ଅଫିସକୁ ଯିବା ସମୟ ଅର୍ଥାତ୍ ଦିନ ଦଶଟାରୁ ସନ୍ଧ୍ୟା ପାଞ୍ଚଟା । ଜୋତା ଖାଇବାକୁ ଇଚ୍ଛୁକ ଉପଯୁକ୍ତ ବ୍ୟକ୍ତିମାନେ ନିଜ ନିଜର ବି. ଏ. ଡିଗ୍ରୀ ଏବଂ ଫଟୋ ସହିତ ଆସିବା ଦରକାର, ନହେଲେ ଜୋତାରେ ମାଡ଼ ହେବ ନାହିଁ ।"

ପରଦିନ କାଗଜରେ ବିଜ୍ଞାପନ ଦେଖି ରାମଦୟାଲ ମୋ ପାଖକୁ ଦଉଡ଼ି ଦଉଡ଼ି ଆସିଲା ଏବଂ କହିଲା, "ଏ ପୁଣି କଣ ପାଗଳାମି' । ମୁଁ କହିଲି, ତମେ ଜାଣିଛ ! ଏ ଦେଶରେ ଜୋତା ଖାଇବା କେତେ ଅପମାନଜନକ । ଆପଣ ଜଣେ ଲୋକର ସ୍ତ୍ରୀକୁ ଅପହରଣ କରି ନେଇପାରନ୍ତି କିନ୍ତୁ ତାକୁ ଜୋତା ମାରିପାରିବେ ନାହିଁ । ପ୍ରଥମ ଘଟଣାକୁ ସେ ସହିବ; କିନ୍ତୁ ଜୋତା ଖାଇବା ପାଇଁ ସେ କେବେ ରାଜି ହେବ ନାହିଁ, କେବେ ନୁହେଁ ।

"ହଁ, ଏ ତ ଠିକ୍ କଥା," ତ୍ରିପାଠୀ କହିଲା ।

"ଏଇଥିପାଇଁ ତ ମୁଁ ବିଜ୍ଞାପନ ଦେଇଛି, ମୁଁ ତମକୁ ଦେଖେଇ ଦବାପାଇଁ ଚାହେଁ ଜୀବନର ମୂଲ୍ୟ କେତେ ତଳକୁ ଚାଲିଯାଇଛି ।"

"କିନ୍ତୁ ଏ ବି. ଏ. ଡିଗ୍ରୀର ସର୍ତ୍ତ କେଉଁଥିପାଇଁ ?"

"କାରଣ ଗରିବ ଲୋକଙ୍କ ଉପରେ ମୋର ଭରସା ନାହିଁ । ଗରିବର ସ୍ୱାଭିମାନ କ'ଣ ? ସେ ତ ଦଶ ଟଙ୍କା ଦେଲେ ଦଶ ଜୋତା ଖାଇବାକୁ ଚାଲି ଆସିବ ।

ଏଣୁ ମୁଁ ସେଇଥିପାଇଁ ଏ ବିଜ୍ଞାପନ କେବଳ ସମାଜର ସଭ୍ୟ ମନୁଷ୍ୟଙ୍କ ପାଇଁ ଦେଇଛି । କାରଣ ସେମାନଙ୍କର ସମାଜରେ କିଛି ମୂଲ୍ୟ ଅଛି ।"

ତ୍ରିପାଠୀ ଚୁପ ହୋଇଗଲା । ଆମେ ଦୁହେଁ ଅପେକ୍ଷା କରିବାକୁ ଲାଗିଲୁ । ଦଶଟାରୁ ଆସି ଚାରିଟା ବାଜିଲା, କିନ୍ତୁ ଜୋତା ଖାଇବା ପାଇଁ କେହି ଆସିଲେ ନାହିଁ । ତ୍ରିପାଠୀ ହସିବାକୁ ଲାଗିଲା । ଭାରି ରାଗ ହେଲା । କିନ୍ତୁ କ'ଣ କରିବି ? ସାଢ଼େ ଚାରିଟା ବେଳକୁ ଜଣେ ନିହାତି ଦୁର୍ବଳିଆ ଲୋକ, ଯାହାର ଚେହେରା ଦେଖିଲେ ଦୟା ହୁଏ, ତରତର ଇଣ୍ଟରଭ୍ୟୁକୁ ଆସିଲା । ତା'ର ବି.ଏ. ଡିଗ୍ରୀ ଦେଖାଇଲା, ଫଟୋ ଦେଖାଇଲା ଏବଂ କହିଲା, 'ଆପଣମାନେ ଜୋତା ଖାଇବା ପାଇଁ କିଛି ପ୍ରାଇଭେଟ୍ କ୍ୟାବିନର ବନ୍ଦୋବସ୍ତ କରିଛନ୍ତି କି ?'

"ନାହିଁ ଆଜ୍ଞା !" ମୁଁ ଖୁବ୍ ଗରମ ହୋଇଯାଇ କହିଲି । ଜୋତା ସମସ୍ତଙ୍କ ଆଗରେ ଖାଇବାକୁ ପଡ଼ିବ, ଏଇ ବାହାରେ ଥିବା ପଡ଼ିଆରେ ।

ଲୋକଟି କିଛିକ୍ଷଣ ଭାବିବାକୁ ଲାଗିଲା । ବିଚାରି ବଡ଼ ଚକ୍କରରେ ପଡ଼ିଗଲା । ବି. ଏ. ଡିଗ୍ରୀ ଏବଂ ଫିଟକୁ ଧରି କିଛି ନ କହି ରୁମ୍ ଖୋଲି ସେ ଗେଟ୍ ବାହାରକୁ ଚାଲିଗଲା ।

ତ୍ରିପାଠୀ ଖୁସିରେ ହସିବାକୁ ଲାଗିଲା । ମୁଁ ଭାବିବାକୁ ଲାଗିଲି, ଭାବିଭାବି କହିଲି, ଭୁଲ ମୋର । ମୁଁ ପୁରସ୍କାର ପରିମାଣ ସତରେ ଖୁବ୍ କମ କରିଦେଇଛି । 'ଟାଇମ୍ସ' କାଗଜକୁ ବହୁତ କମ ଲୋକ ପଢ଼ନ୍ତି, ନହେଲେ କେତେ ଲୋକ ଆସନ୍ତେଣି ଜୋତା ଖାଇବା ପାଇଁ ଏବଂ ଯେଉଁ ଲୋକମାନେ 'ଟାଇମ୍ସ, ପଢ଼ନ୍ତି, ସେମାନେ ନିଶ୍ଚୟ ପଇସାବାଲା ଲୋକ ହୋଇଥିବେ । ଏଣୁ ସେମାନେ ନିଶ୍ଚୟ ନିଜର ମାନ-ସମ୍ମାନ ତୁଳନାରେ ଏ ପାଞ୍ଚଶହ ଟଙ୍କାକୁ ବହୁତ କମ ବୋଲି ଭାବିଥିବେ । ମୁଁ ଏ ଟଙ୍କା ପୁଣି ବଢ଼ାଇ ଦେଉଛି ।

ପରଦିନ ବିଜ୍ଞାପନରେ ପୁରସ୍କାରର ଅଙ୍କ ହଜାରେକୁ ବଢ଼ାଇ ଦିଆଗଲା । ସେଥିରେ ମଧ୍ୟ ଖାଲି ଦୁଇ ତିନୋଟି ଲୋକ ଆସିଲେ । ତୃତୀୟଦିନ ପୁରସ୍କାରକୁ ଦୁଇହଜାର କରି ଦିଆଗଲା । ତଥାପି ମଧ୍ୟ ଚାରିପାଞ୍ଚଜଣ ଆସିଲେ, ରାଗରେ ମୁଁ ଜଳିବାକୁ ଲାଗିଲି । କଣ ଏ ସହରରେ ପଇସାକୁ ଲୋକଙ୍କର ଖାତିର ନାହିଁ ! ମୋର ଯୋଜନା ଠିକ୍ କାମ କରୁ ନଥିଲା ଏବଂ ତ୍ରିପାଠୀ ମତେ ଥଟ୍ଟାରେ ଉଡ଼େଇବାକୁ ଲାଗିଲା । ଆପଣମାନେ ତ୍ରିପାଠୀର ଏ ବ୍ୟଙ୍ଗପୂର୍ଣ୍ଣ ହସ ଶୁଣିଥିଲେ, ଆପଣଙ୍କର ମଧ୍ୟ ମିଜାଜ ଗରମ ହୋଇଯାଇଥାନ୍ତା ଏବଂ ଆପଣ ମଧ୍ୟ ତାହା ହିଁ କରିଥାନ୍ତେ, ଯାହା ମୁଁ କରିଛି । ମୁଁ ତ୍ରିପାଠୀ ସାଙ୍ଗେ ଆଉ ପରାମର୍ଶ ନକରି ପୁରସ୍କାରର ପରିମାଣ ଦଶହଜାର କରିଦେଲି, ଆଉ ଜୋତାର ପରିମାଣ ମଧ୍ୟ ବୃଦ୍ଧି କରି ଦେଲି । ଯେଉଁ ଲୋକ ମୋଠୁ ପଚିଶ ଜୋତା ଖାଇବ, ସେ ସାଙ୍ଗେ ସାଙ୍ଗେ ଦଶହଜାର ଟଙ୍କା ପାଇବ । ଆଉ ଏ ପ୍ରସ୍ତାବ କେବଳ ଦୁଇଦିନ ପାଇଁ ଲାଗୁହେବ ।

ପରଦିନ ସକାଳେ ଆଠଟା ପାଖାପାଖି ତ୍ରିପାଠୀ ଦୌଡ଼ି ଦୌଡ଼ି ମୋ ପାଖକୁ ଆସିଲା । ତା ରଙ୍ଗ ଫିକା ପଡ଼ିଯାଇଥିଲା ଏବଂ ଚେହେରାରେ ଉଦ୍‌ବେଳନର ସ୍ପର୍ଶ ।

"କଣ ହେଲା ?" ମୁଁ ପଚାରିଲି ।

"ଧାଡମହଲ କୋଠରି ବାହାରେ ଦୁଇଶ ଲୋକଙ୍କ ଲମ୍ବାଧାଡ଼ି, ବର୍ତ୍ତମାନ କେବଳ ଆଠଟା ବାଜିଛି ।" ମୁଁ ଖୁସିରେ ନାଚିଗଲି ।

“ଚିନ୍ତା କରିବାର ନାହିଁ,” ମୁଁ କହିଲି । ବ୍ୟାଙ୍କରୁ ପଚାଶ ଲକ୍ଷ ଟଙ୍କା ମଗେଇ ନେଇଛି । ମୁଁ ତମକୁ ଶିଖାଇ ଦେବାପାଇଁ ଚାହେଁ, କୋଟିଏ ଟଙ୍କା ଖର୍ଚ୍ଚ ହୋଇଗଲେ ମଧ୍ୟ କିଛି ଚିନ୍ତା କରିବାର ନାହିଁ ।”

ଦିନ ଦଶଟା ନ ବାଜୁଣୁ ଭିଡ଼ ଏତେ ବଢ଼ି ଯାଇଥିଲା ଯେ ଘଟଣାସ୍ଥଳକୁ ପୋଲିସ ଏବଂ ମାଜିଷ୍ଟ୍ରେଟଙ୍କୁ ଆସିବାକୁ ପଡ଼ିଲା । ମାଜିଷ୍ଟ୍ରେଟ ଜଣେ ଡାକ୍ତରଙ୍କୁ ସାଙ୍ଗରେ ଆଣିଥିଲେ; କାରଣ ତାଙ୍କୁ କାଲେ ସନ୍ଦେହ ହେଉଥିଲା ଯେ ମୋର ମତିଭ୍ରମ ହୋଇଛି । ଡାକ୍ତର ମତେ ପରୀକ୍ଷା କରି କୌଣସି ମତିଭ୍ରମ ଘଟିନାହିଁ ବୋଲି ରିପୋର୍ଟ ଦେଲେ । ଆହୁରି ମଧ୍ୟ କହିଗଲେ, “ମସ୍ତିଷ୍କ ବହୁତ ଗରମ ଅଛି । ମୁଁ ମୋର କମ୍ପାଉଣ୍ଡରକୁ ଏଠାରେ ଛାଡ଼ି ଯାଉଛି ।”

“କମ୍ପାଉଣ୍ଡର କଣ ଦରକାର ?” ମୁଁ ପଚାରିଲି । ଡାକ୍ତର ସାମାନ୍ୟ ହସି ଉତ୍ତର ଦେଲେ ଏବଂ ଯିବା ପୂର୍ବରୁ କହିଗଲେ, ତାର ମଧ୍ୟ ଟିକେ କୋଡା ଖାଇବା ପାଇଁ ସଉକ ଅଛି ଆଶା ଆପଣ ତାକୁ ନିରାଶ କରିବେ ନାହିଁ ।”

ଡାକ୍ତର ଚାଲିଗଲେ । କ୍ରମାନୁସାରେ କୋଡାର ପ୍ରୋଗ୍ରାମ ଆରମ୍ଭ ହୋଇଗଲା । ମାଜିଷ୍ଟ୍ରେଟ ଏବଂ ତାଙ୍କ ସାଙ୍ଗରେ ଥିବା ଦୁଇଜଣ କିରାଣୀ ନିୟମାନୁସାରେ ସବୁ କୋଡା ଖାଇବା ଲୋକଙ୍କର ଫଟ ଏବଂ ବି. ଏ. ଡିଗ୍ରୀ ଯାଞ୍ଚ କରି ଦେଖୁଥିଲେ ଏବଂ ସେମାନଙ୍କଠାରୁ ଗୋଟିଏ ଫର୍ମରେ ଦସ୍ତଖତ କରାଇ ନେଉଥିଲେ, ଯେଉଁଥିରେ ଲେଖାଥିଲା : “ମୁଁ ମୋର ନିଜ ଇଚ୍ଛାରେ ପଚାଶ କୋଡା ଖାଉଛି; ଏହାର ପରିଣତି ଯାହା ହେବ ସେଥିପାଇଁ କେବଳ ମୁଁହିଁ ଦାୟୀ ରହିବ ।”

ଏହାପରେ ମୁଁ କୋଡା ମାରିବା ଆରମ୍ଭ କରୁଥିଲି । ସଭ୍ୟ ଜଗତର ପ୍ରାୟ ସବୁ ଶ୍ରେଣୀର ଲୋକ ଆସୁଥିଲେ—ବିଭିନ୍ନ ଧର୍ମର, ବିଭିନ୍ନ ଜାତିର ଆଉ ବିଭିନ୍ନ ବୟସର । ମୁଁ ସମସ୍ତଙ୍କୁ କୋଡାରେ ମାରୁଥିଲି ଏବଂ ରାମଦୟାଲ ତ୍ରିପାଠୀଙ୍କୁ ବ୍ୟଙ୍ଗପୂର୍ଣ୍ଣ ନୟନରେ ଅନାଉଥିଲି । ରାମଦୟାଲ ତ୍ରିପାଠୀର ମୁହଁ କଳା ପଡ଼ି ଯାଇଥିଲା । ସେ ଆଖି ଉଠାଇ ମତେ ଦେଖିପାରୁ ନ ଥିଲା । ଦ୍ୱିପ୍ରହର ନ ହେଉଣୁ ସେ କୁଆଡ଼େ ଚାଲିଗଲା । କିନ୍ତୁ ଦ୍ୱିପ୍ରହର ବେଳକୁ ଧାଡ଼ି ଏତେ ଲମ୍ବା ହୋଇଗଲା ଯେ ଟର୍ନର ରୋଡ଼ରୁ ମାସନ ରୋଡ଼ ପର୍ଯ୍ୟନ୍ତ ଆଖି ପାଇଲା ନାହିଁ । ଲୋକଙ୍କର ଏପରି ଭିଡ଼ ଲାଗିଲା ଯେ ପୋଲିସକୁ ଲାଠି ଚଳାଇବାକୁ ପଡ଼ିଲା କାରଣ ପ୍ରତି ଲୋକ ଆଗକୁ ଆସିବାକୁ ଚେଷ୍ଟା କରୁଥିଲେ । କୋଡା ଖାଇବା ପାଇଁ ସେମାନେ ନିଜ ନିଜ ଭିତରେ କୋଡାରେ ପିଟାପିଟି ମଧ୍ୟ ଆରମ୍ଭ କରିଦେଲେ ।

ଦିନ ଦଶଟା ବାଜିଲା ବେଳକୁ ମୋ ଜୋତା ସରିଗଲା ଏବଂ ମୁଁ ଏ ନାଟକକୁ ବନ୍ଦ କରି ଦେବାପାଇଁ ଭାବୁଥିଲି । କିନ୍ତୁ ସେତେବେଳକୁ ମୋ ସାମନାରେ ବୃଦ୍ଧଟିଏ ଠିଆ ହୋଇଥିଲା । ମୁହଁରେ ଧଳା ଦାଢ଼ି ଭର୍ତ୍ତି । ବିକଳ ହୋଇ ସେ ମୋ ମୁହଁକୁ ଅନାଇ ରହିଥିଲା ।

"ମତେ ଜୋତା ମାର, ମତେ ଜୋତା ମାର । ମତେ ଯେତେ ଇଚ୍ଛା ସେତେ ଜୋତା ମାରି ଦଶ ହଜାର ଟଙ୍କା ଦିଅ ।"

"କିନ୍ତୁ ମୋର ଜୋତା ଯେ ସରି ଯାଇଛି ।" ମୁଁ ଉତ୍ତର ଦେଲି । ବୁଢ଼ାଟି ନିଜ ଗୋଡ଼ରୁ ଫଟା ଚପଲ ବାହାର କଲା ଏବଂ ମୋ ହାତରେ ଦେଇ କହିଲା, "କିଛି ଚିନ୍ତା ନାହିଁ, ମୋ ଜୋତା ନିଅ ଆଉ ମତେ ମାର; କିନ୍ତୁ ମୋତେ ଦଶ ହଜାର ଟଙ୍କା ଦିଅ, ମୁଁ ମୋର ଝିଅକୁ ବାହା ଦେବି ।"

ତା ପଛକୁ ଆଉ ଏକ ବୁଢ଼ୀ ଠିଆ ହୋଇଥିଲା । ମୁଁ ବୁଢ଼ାକୁ ବିଦାକରି ବୁଢ଼ୀ ପାଖକୁ ଯାଇ ପଚାରିଲି, ମା, ତମେ ଏଠି କ'ଣ କରିବାପାଇଁ ଆସିଛ ? ବୁଢ଼ୀଟି କମ୍ପିତ ସ୍ୱରରେ ଉତ୍ତର ଦେଲା, 'ଜୋତା ଖାଇବା ପାଇଁ ।'

"କିନ୍ତୁ ତୁ ତ ମା···ଦୟାକରି ନିଜର ବୟସକୁ ଅନା, ତତେ କେମିତି ମୁଁ ଜୋତା ମାରି ପାରିବି ?"

"ସ୍ତ୍ରୀ ତ ସବୁବେଳେ ପୁରୁଷର ପାଦର ଜୋତା, ସେ ବି. ଏ. ପାଶ ହେଉ ବା ଏମ୍. ଏ. ପାଶ ହେଉ । ମୋତେ ଶହେ ଜୋତା ମାର, ହଜାର ଜୋତା ମାର ମତେ ଦଶହଜାର ଟଙ୍କା ଦେଇଦିଅ ମୋର ମରଣ ସମୟ ପାଖେଇ ଆସିଲାଣି । ଏଇଥିରେ ମୋର କଲ୍ୟାଣ ହୋଇଯିବ ।"

ସେ ଦୁଇ ହାତ ବଢ଼ାଇ ମୋତେ ଆଶୀର୍ବାଦ ଦେବାକୁ ଲାଗିଲା ।

ଠିକ୍ ସନ୍ଧ୍ୟା ପାଞ୍ଚଟା ବେଳେ ମୁଁ ଜୋତା ମାରିବା ବନ୍ଦ କରିଦେଲି । କିନ୍ତୁ ଲୋକମାନଙ୍କର ଭିଡ଼ କମିଲା ନାହିଁ । ଟେଣ୍ଟର ବେଢ଼ରେ ଗୋଟିଏ ଛୋଟ-କାଟର ମେଳା ବସିଗଲା । ବାଦାମବାଲା, ଚାହାବାଲା, ଚାଟ୍‌ବାଲା ଇତ୍ୟାଦିଙ୍କ ଭିଡ଼ ଜମିଗଲା । ଲୋକମାନେ ଧାଡ଼ିରେ ଠିଆହୋଇଯିବା ପାଇଁ ମଧ୍ୟ ସଉଦା ଆରମ୍ଭ କରିଦେଲେ । ପଛବାଲା ଆଗକୁ ଆସିବା ପାଇଁ ପାଞ୍ଚଶହ ଟଙ୍କାରୁ ଆରମ୍ଭ କରି ପାଞ୍ଚ ହଜାର ଦବା ପାଇଁ ମଧ୍ୟ ରାଜି ହୋଇଗଲେ । ସନ୍ଧ୍ୟା ତାର ପ୍ରଭାବ ବିସ୍ତାର କରିବାକୁ ଆରମ୍ଭ କଲା ଏବଂ ଲୋକମାନେ ସେମାନଙ୍କ ଘରୁ କମ୍ବଳ ଏବଂ ବିଛଣା ମଗାଇ ଆଣିଲେ । ଚାହାବାଲା ଗରମ ଚା, ସିଗ୍ରେଟ୍‌ବାଲା ପାନ ସିଗ୍ରେଟ୍ ଏବ ପୁରି ତରକାରିବାଲାଙ୍କର ବିକ୍ରି ମଧ୍ୟ ସେଇ ପରିମାଣରେ ବୃଦ୍ଧି ପାଇବାରେ

ଲାଗିଲା । ପୁରସ୍କାର ହାସଲ କରିବା ପାଇଁ ସିଣ୍ଡିକେଟ ବସିଗଲା ଏବଂ ଧନୀ ଲୋକେ ନିଜ ନିଜର ପୁରସ୍କାର ପାଇଁ ଦଶ ପନ୍ଦର ଜଣ ଗୁଣ୍ଡାଙ୍କୁ ଆଣି ଲାଇନରେ ପୁରାଇ ଦେଲେ । ସେଇ ଗୁଣ୍ଡାମାନେ ଏକେ ତ ହଜାରେ ଟଙ୍କା ପାଇବେ ଏବଂ ବାକି ନଅହଜାର ଟଙ୍କା ଉକ୍ତ ଧନୀ ଲୋକମାନଙ୍କର । ସେଇ ରାତିରେ ହିଁ ବି. ଏ. ଡିଗ୍ରୀର ଦାମ୍ ବଢ଼ିଗଲା । ଯେଉଁ ବି. ଏ. ଡିଗ୍ରୀରେ ଦେଢ଼ଶହ ଟଙ୍କାର ଚାକିରି ମିଳୁ ନ ଥିଲା ସେଇ ଡିଗ୍ରୀ ପାଇଁ ବର୍ତ୍ତମାନ ଦଶ ହଜାର ଟଙ୍କା ମିଳିଯାଉଛି ।

ତ୍ରିପାଠୀର କେଉଁଠି ପତ୍ତା ମିଳିଲା ନାହିଁ । ରାତିସାରା ସେ ମୋ ପାଖକୁ ଆସିଲା ନାହିଁ, ସକାଳେ ମଧ୍ୟ ଆସିଲା ନାହିଁ । ଦଶଟା ବେଳେ ପୁଣି ଜୋତା ମାରିବା ପ୍ରୋଗ୍ରାମ ଆରମ୍ଭ ହୋଇଗଲା ଏବେ ବହୁତ ପୁଲିସ ସେଠାରେ ମୁତୟନ ଥିଲେ ଏବଂ ମାଜିଷ୍ଟ୍ରେଟଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଥିଲା । ଦିନ ଏଗାରଟା ବେଳକୁ ଜଣେ ଲୋକ ମୁହଁ ଉପରେ ଚାଦର ଢାଙ୍କି ମୋ ପାଖକୁ ଜୋତା ଖାଇବା ପାଇଁ ଆସିଲା । ମୁଁ ଆପତ୍ତି କଲି : ମୁହଁ ଉପରୁ ଚାଦର ନ ଉଠାଇଲେ ଜୋତା ମରା ହେବ ନାହିଁ ।

ବହୁ ଆପତ୍ତି ପରେ ଲୋକଟି ମୁହଁ ଉପରୁ ଚାଦର ଉଠାଇଲା ।

ଲୋକଟି ରାମଦୟାଲ ତ୍ରିପାଠୀ ହିଁ ଥିଲା ।

"ତୁମେ ?" ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

"ହିଁ" । "ବର୍ତ୍ତମାନ ଦୟାକରି ତମେ ଏ ଖେଳ ବନ୍ଦ କର । ମତେ ଉଚିତ ଶିକ୍ଷା ମିଳିଗଲା ।" ତ୍ରିପାଠୀର ପଛରେ ଠିଆ ହୋଇଥିବା ଜନତା ଏକ ସ୍ୱରରେ ପାଟିକଲେ, ଏ ଖେଳ ବନ୍ଦ ହୋଇ ପାରିବ ନାହିଁ ।"

ମୁଁ ଭିଡ଼ ଭିତରେ ଖୁବ୍ ଜୋର୍‌ରେ ପାଟି କରୁଥିବା ଲୋକଟିକୁ ଲକ୍ଷ୍ୟ କଲି । ସେ ଥିଲା ସେଠ୍ ମାତା ପ୍ରସାଦ, ଯିଏ କି ସହରର ସବୁଠୁ ଧନୀ ଲୋକ ଏବଂ ଠିକାଦାର । ସେ ମୋର ଏ ସାତ ମହଲା କୋଠାଟିକୁ ତିଆରି କରିଥିଲା । ମୁଁ ତା ପାଖକୁ ଯାଇ ପଚାରିଲି, ସେଠ୍ ! ତମେ କାହିଁକି ଏଠାରେ ?

ଉତ୍ତରରେ ସେ କହିଲା, ମ୍ୟୁନିସିପାଲ କର୍ପୋରେସନରେ ଦଶ ହଜାର ଜୋତା ଖାଇଲେ ଗୋଟିଏ ଠିକା ମିଳେ । ଏଠି ମୋ ସାଙ୍ଗଠାରୁ ପଚାଶ ଜୋତା ଖାଇ ଦଶ ହଜାର ମିଳିବ ଏବଂ ତାହା ପୁଣି ପାଞ୍ଚ ମିନିଟ୍‌ରେ, କିଛି ମନ୍ଦ ନୁହେଁ ।

ମୁଁ କହିଲି, "କିନ୍ତୁ ମୋ' ପାଖରେ ବ୍ୟାଙ୍କରେ ଯେତେ ଟଙ୍କା ଥିଲା ସବୁ ସରିଗଲାଣି, ଆଉ କିଛି ନାହିଁ ।"

କିଛି ଚିନ୍ତା ନାହିଁ, ତମେ ଏ କୋଠା ବିକିଦିଅ, ମୁଁ କିଣିନେବି ଆଉ ତମେ ପୁଣି କୋଡା ମାରି ପାରିବ ।

ମୁଁ କହିଲି, 'ମୁଁ କୋଡା ମାରି ମାରି ଥକିଲିଣି ।'

'କିନ୍ତୁ କୋଡା ତ ତମକୁ ମାରିବାକୁ ପଡ଼ିବ ।'

'ଆମେ କିନ୍ତୁ କୋଡା ଖାଇବାକୁ ହିଁ ଆସିଛୁ । ଆଉ କୋଡା ଖାଇକରି ହିଁ ଯିବୁ । ଲାଇନ୍‌ରେ ଥିବା ସବୁ ଲୋକ ଏକା ସାଙ୍ଗରେ ଚିତ୍କାର କଲେ ।'

ପଛରେ ଠିଆ ହୋଇଥିବା ଜଣେ ଲୋକ ଉଚ୍ଚ ରସିକତାର ସ୍ୱର ତୋଳି କହିଲା 'କୋଡା ଜିନ୍ଦାବାଦ୍' ଏବଂ ସାଙ୍ଗେ ସାଙ୍ଗେ ଶ୍ରେଷ୍ଠ ଉଧାନାଥାର ଗୋଟିଏ ଶ୍ରେଷ୍ଠକାରର ନିର୍ବାଚନ ସଭା ଆରମ୍ଭ ହୋଇଗଲା ।

ବାହାରେ ଗୁଳିଗୁଳିନାର ଶବ୍ଦ ଶୁଣାଗଲା, ଦଙ୍ଗାହଙ୍ଗାମ ବଢ଼ିବାରେ ଲାଗିଲା । ଲୋକଙ୍କୁ ଜଣାପଡ଼ି ଯାଇଥିଲା ଯେ ମୁଁ ପୁରସ୍କାର ବାଣ୍ଟିବା ପାଇଁ ମନା କରୁଛି । ଗୁଳିଗୁଳିନାରେ ଦୁଇଜଣ ଲୋକଙ୍କ ମୃତ୍ୟୁ ମଧ୍ୟ ହୋଇଗଲା ।

ମାଜିଷ୍ଟ୍ରେଟ କହିଲେ, "... ଆପଣ ଏ ପ୍ରୋଗ୍ରାମ ଦୁଇଦିନ ପାଇଁ କରିଥିଲେ । ଏଣୁ ଆପଣଙ୍କୁ ଦୁଇଦିନ ପର୍ଯ୍ୟନ୍ତ କୋଡା ମାରିବାକୁ ପଡ଼ିବ । ନ ହେଲେ ଏଠି ଭୟାବହ ପରିସ୍ଥିତି ସୃଷ୍ଟି ହେବ ଏବଂ ସେଥିପାଇଁ ଆପଣ ହିଁ ଦାୟୀ ରହିବେ ।"

ମୁଁ ମୋର ଏହି ଦୁଇକୋଟି ଟଙ୍କାର ଘରଟିକୁ ଦେଢ଼ କୋଟି ଟଙ୍କାରେ ଶେଠ୍ ମାତାପ୍ରସାଦଙ୍କୁ ତତ୍‌କ୍ଷଣାତ୍ ବିକି ଦେଲି ଏବଂ ପୁଣି କୋଡା ମାରିବା ଆରମ୍ଭ କଲି ।

ଦିନ ତିନିଟାବେଳକୁ ମୋର ଯାହା କିଛି ଥିଲା ସବୁ ନିଲାମ ହୋଇଗଲା । କେବଳ ଗୋଟିଏ ବ୍ୟାଙ୍କରେ କିଛି ପଇସା ରହିଥିଲା । ଏଣୁ ମୁଁ ଏଥର ଧୀରେ ଧୀରେ କୋଡା ମାରିବାକୁ ଇଚ୍ଛା କଲି; କାରଣ ମୁଁ ବୁଝିଥିଲି କେମିତି ପାଞ୍ଚଟା ବାଜିଗଲେ ମୋର କୋଡାମରା ବନ୍ଦ ହୋଇଯିବ ଏବଂ ମୋର ଶେଷ ବ୍ୟାଙ୍କରେ ଥିବା ସାମାନ୍ୟ ଧନ ବଞ୍ଚିଯିବ ।

କିନ୍ତୁ ଚାରିଟାବେଳକୁ ସେଇ ଟିକକ ମଧ୍ୟ ଚାଲିଗଲା ଏବଂ ପାଞ୍ଚଟା ବେଳକୁ ମୋର ହାତରେ କେବଳ ଦୁଇଟା କୋଡା ହିଁ ରହିଗଲା । କୋଡା ଦୁଇଟିକୁ ଧରି ମୁଁ ସେ କୋଠାଘରୁ ବାହାରକୁ ଚାଲି ଆସିଲି ।

ସନ୍ଧ୍ୟା ନଇଁ ଆସୁଥିଲା । ଲୋକମାନେ ନିଜ ନିଜ ଘରକୁ ଫେରି ଯାଉଥିଲେ । ରାସ୍ତାଟା ନିର୍ଜନ ହୋଇ ଯାଇଥିଲା । ବାହାରେ ପଡ଼ିଥିବା ମୋଟ ଏଇ ଜାମୁକୋଳି ଗଛ ତଳେ ବସି ସବୁଦିନ ପରି କୋଡା ମରାମତି କରୁଥିଲି ।

ମୁଁ ଘସୀଟୁ ପାଖକୁ ଯାଇ ପଚାରିଲି, ଆରେ ଘସୀଟୁ, ତୁ ଗଲୁ କାହିଁ ଜୋତା ଖାଇବାକୁ ? ଘସୀଟୁ ମୋ' ଆଡ଼କୁ ସେଇ ପୁରୁଣା କଗଡ଼ମ୍ବର ଆଖିରେ ଅନାଇ କହିଲା, ସରକାର ! ମୁଁ ଜୋତା ତିଆରି କରେ, ଖାଏ ନାହିଁ ।

ତା'ର ଏ ସରଳ ବ୍ୟବହାର ମୋ' ହୃଦୟରେ ଗଭୀର ରେଖାପାତ କଲା । ସେଇଠି ତା' ପାଖରେ ଏଇ ଟୁଲ ଉପରେ ବସିଗଲି, ଯେଉଁଠି ତୁମେ ବର୍ତ୍ତମାନ ବସିଛ ।

"ସେଉଁଦିନଠାରୁ ମୁଁ ଏଇଠି ଅଛୁ, ମୋତେ ଲୋକମାନେ ବହୁତ ପ୍ରକାର ସାହାଯ୍ୟ କରିବାକୁ ଚାହିଁଲେ । ଅନେକ କହିଲେ ପୁଣି ଥରେ ବ୍ୟବସାୟ ଆରମ୍ଭ କରିବା ପାଇଁ, କିନ୍ତୁ ମୁଁ ମନାକରି ଦେଲି । କାରଣ ସେତେବେଳକୁ ମୁଁ ସଂପୂର୍ଣ୍ଣ ରୂପେ ନିଜକୁ ଗଣ୍ଡମୂର୍ଖ ବୋଲି ପ୍ରମାଣ କରି ସାରିଥିଲି ।"

ମୋଚିଟି ମୋର ଜୋତାକୁ ନେଇ ତା' ମୁଣ୍ଡରେ ଲଗାଇଲା ଏବଂ ବଡ଼ ପ୍ରେମରେ ତାକୁ ଚୁମା ଦେଲା ଆଉ କହିଲା, 'ସେଇ ଦିନଠାରୁ ମୁଁ ଏହି ଜାମୁକୋଳି ଗଛତଳେ ବସି ଜୋତା ତିଆରି କରୁଛୁ ଏବଂ ସବୁଦିନ ସକାଳୁ ଉଠି ଜୋତାକୁ ପ୍ରଣାମ କରୁଛୁ··· ଜୋତା ଯିଏ କି ଏ ଯୁଗର ଅନ୍ନ ଏବଂ ଅନ୍ନଦାତା ମଧ୍ୟ ।



# ମନ୍ତ୍ରୀଙ୍କ ବେମାରୀ

**୫ ଫେବୃୟାରୀ 'ଟାଇମ୍‌ସ'ର ପ୍ରଥମ ପୃଷ୍ଠାରେ**

ଭୁସାପ୍ରାନ୍ତର ମୁଖ୍ୟମନ୍ତ୍ରୀ ଶ୍ରୀ ଜ: ଜ: ଗଜାନନ୍ଦ ଆଜି ହଠାତ୍ ବେମାର ପଡ଼ିଗଲେ । ସେ ନିଜ ସରକାରୀ ବଙ୍ଗଳାର ସୋଫା ଉପରେ ବସିରହି ତରଭୁଜ ଖାଉଥିଲେ ଏବଂ ପ୍ରାୟ ଦେଢ଼ଟା ତରଭୁଜ ଖାଇସାରିଲା ପରେ ହଠାତ୍ ପେଟରେ ଯନ୍ତ୍ରଣା ଅନୁଭବ କଲେ ଏବଂ ହାୟ କହି ବେହୋସ ହୋଇଗଲେ । କିନ୍ତୁ ବେହୋସ ହେବା ପୂର୍ବରୁ ସେ ଏତିକି କହିଲେ ଯେ ସେ ନିଜ ଉପରେ ଦାୟିତ୍ୱ ଅନ୍ୟ କେଉଁ ମନ୍ତ୍ରୀଙ୍କୁ ହସ୍ତାନ୍ତର କରିବେ ନାହିଁ ।

**୭ ଫେବୃୟାରୀ "କ୍ରନିକଲ"ର ପ୍ରଥମ ପୃଷ୍ଠାରେ :**

ଆଜି ଭୁସାପ୍ରାନ୍ତ'ର ମୁଖ୍ୟମନ୍ତ୍ରୀଙ୍କ ସ୍ୱାସ୍ଥ୍ୟର ପରୀକ୍ଷା ଭୁସାପ୍ରାନ୍ତର ସାତଜଣ ବଡ଼ ବଡ଼ ଡାକ୍ତରଙ୍କ ଦ୍ୱାରା କରାଯାଇଛି । ମୁଖ୍ୟମନ୍ତ୍ରୀଙ୍କ ପେଟର ଆକାର ବୃଦ୍ଧି ପାଇବା ହେତୁ ଡାକ୍ତରମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ମୁଖ୍ୟମନ୍ତ୍ରୀଙ୍କ ଚିକିତ୍ସା ପାଇଁ କୌଣସି ପଶୁଚିକିତ୍ସକଙ୍କ ପରାମର୍ଶ ଦରକାର ଏବଂ ଏଥିପାଇଁ ଆଜି ରାଜଧାନୀର ସୁପ୍ରତିଷ୍ଠିତ ପଶୁଚିକିତ୍ସକ ଡାକ୍ତର ଏସ୍ କେ. ପୋଖର, ଡି. ଡି. ଟି. ଭି. ଆଇ. ପି.ଙ୍କୁ ଏକ ସ୍ୱତନ୍ତ୍ର ଉଡ଼ାଜାହାଜ ଯୋଗେ ଭୁସାପ୍ରାନ୍ତର ରାଜଧାନୀ 'ଘୁସାନଗର'କୁ ପଠାଇ ଦିଆଯାଇଛି । ହାଇକମାଣ୍ଡ ଚାହାନ୍ତି ଯେ ଯଦି ମୁଖ୍ୟମନ୍ତ୍ରୀ ଅସୁସ୍ଥ ତେବେ ସେ ନିଜର ଦାୟିତ୍ୱ ଅନ୍ୟ ଜଣେ ମନ୍ତ୍ରୀଙ୍କୁ ହସ୍ତାନ୍ତର କରିଦେବା ଉଚିତ ।

ଆଜି 'ଭୁସାପ୍ରାନ୍ତ'ର ଅନ୍ୟ ଜଣେ ବିଶିଷ୍ଟ ନେତା ଭ. ଭ. ଭୂଜାନନ୍ଦ ରାଜଧାନୀ ଯାତ୍ରା କରିଛନ୍ତି । ଯେତେବେଳ ପର୍ଯ୍ୟନ୍ତ ଶ୍ରୀ ଗଜାନନ୍ଦ ବେମାର ପଡ଼ି ନ ଥିଲେ ଲୋକେ ଶ୍ରୀଯୁକ୍ତ ଭୂଜାନନ୍ଦଙ୍କୁ ଶ୍ରୀ ଗଜାନନ୍ଦଙ୍କ ଡାହାଣ ହାତ ବୋଲି ବିଚାରୁଥିଲେ । ଶୁଣାଯାଏ ଯେ ହାଇକମାଣ୍ଡ ପାଖକୁ ଯାଇଛନ୍ତି ଏବଂ ହାଇକମାଣ୍ଡଙ୍କୁ ସେ ଅନୁରୋଧ କରି କହିବେ ଯେ ଯଦି ତାଙ୍କୁ ଶ୍ରୀ ଗଜାନନ୍ଦଙ୍କ ଜାଗାରେ ମୁଖ୍ୟମନ୍ତ୍ରୀ

କରାଇ ଦିଆଯାଏ ତେବେ ସେ 'ପଞ୍ଚବର୍ଷୀୟ ଯୋଜନା'କୁ ନିଷ୍ଟୟ ସାତ ବର୍ଷରେ ପୂରା କରିବେ ଯେତେବେଳେ ଗଜାନନ ଏହି ଯୋଜନାକୁ ଦଶବର୍ଷରେ ସମ୍ପୂର୍ଣ୍ଣ କରିବେ ବୋଲି କଥା ଦେଇଥିଲେ ।

## ୭ ଫେବୃୟାରୀ 'ଷ୍ଟାଣ୍ଡାର୍ଡ଼'ର ପ୍ରଥମ ପୃଷ୍ଠାରେ !

ଶ୍ରୀ ଶ୍ରୀ ଗଜାନନ୍ଦ ବର୍ତ୍ତମାନ ମଧ୍ୟ ଅଚେତ ଅଛନ୍ତି; କିନ୍ତୁ ସେ ନିଜ ବିଭାଗର ଦାୟିତ୍ୱ ସମ୍ପୂର୍ଣ୍ଣ ଭାବରେ ତୁଲାଉଛନ୍ତି । ଅଚେତ ଅବସ୍ଥାରେ ତାଙ୍କର ଶ୍ରୀମୁଖରୁ ଯାହା ନିଃସୃତ ହେଉଛି ତାକୁ ଟାଇପ୍‌ସେକ୍ରେଟେରୀ ତୁରନ୍ତ ନୋଟ କରିନେଉଛନ୍ତି ଏବଂ ପରେ ଏହାକୁ ଜ୍ୟୋତିଷଙ୍କ ପାଖକୁ ପଠାଇ ଦିଆଯାଉଛି । ଏହି ଜ୍ୟୋତିଷ ଗତ ସାତ ବର୍ଷ ଧରି ଶ୍ରୀ ଜି. ଜି. ଗଜାନନ୍ଦଙ୍କ ଜ୍ୟୋତିଷ ଅଛନ୍ତି ଏବଂ ବଡ଼ ଚତୁରତାର ସହିତ ମନ୍ତ୍ରୀମଣ୍ଡଳର କାର୍ଯ୍ୟ ତୁଲାଉଛନ୍ତି ।

## ୮ ଫେବୃୟାରୀ 'ଏକ୍‌ସପ୍ରେସ'ର ପ୍ରଥମ ପୃଷ୍ଠାରେ :

ଶ୍ରୀ ଗଜାନନ୍ଦ ବର୍ତ୍ତମାନ ପର୍ଯ୍ୟନ୍ତ ଅଚେତ ଅଛନ୍ତି ଏବଂ ନିଜ ବିଭାଗର ଦାୟିତ୍ୱ ସୁଚାରୁରୂପେ ତୁଲାଉଛନ୍ତି । ମୁଖ୍ୟ ପଶୁଚିକିତ୍ସକ ଶ୍ରୀ ଏସ୍. କେ. ପୋଖରଙ୍କ ଉପଦେଶ ଅନୁସାରେ ମୁଖ୍ୟମନ୍ତ୍ରୀଙ୍କ ଚିକିତ୍ସା ପାଇଁ ମି. ବୋଲନଙ୍କୁ ଅଷ୍ଟ୍ରେଲିଆରୁ ଡକାଯାଇଛି । ମିଷ୍ଟର ବୋଲନ୍ ଅଷ୍ଟ୍ରେଲିଆରେ ମେଣ୍ଢାମାନଙ୍କର ହେଉଥିବା ରୋଗର ବିଶେଷଜ୍ଞ ରୂପେ ପରିଚିତ । ମିଷ୍ଟର ବୋଲନ୍ ରୋଗୀକୁ ନାନା ପ୍ରକାର ପରୀକ୍ଷା କରିସାରିଲା ପରେ ବି ଆଶ୍ଚର୍ଯ୍ୟ ସହିତ ପଚାରିଲେ ! "ଆପଣଙ୍କୁ ଏ ମେଣ୍ଢା ରୋଗ କିପରି ଆକ୍ରମଣ କଲା ? ଏ ରୋଗ ପୁଣି ସବୁ ମେଣ୍ଢାଙ୍କ ଦେହରେ ଦେଖାଯାଏ ନାହିଁ, ଯେଉଁ ମେଣ୍ଢାମାନଙ୍କର ଲୋମ ବହୁତ ମୋଟା ଏବଂ ଗହଳ କେବଳ ସେଇ-ମାନଙ୍କଠାରେ ଏହି ରୋଗ ଦେଖାଯାଏ । ଯଦିଓ ଶ୍ରୀ ଗଜାନନ୍ଦଙ୍କ ଶରୀରରେ ବହୁତ ଲୋମ ଅଛି, ସେଥିରୁ ତ ଆଉ ଉଲ୍ ହୋଇପାରିବ ନାହିଁ, ଏହା ହିଁ ଆଶ୍ଚର୍ଯ୍ୟର କଥା ।

## ୯ ଫେବୃୟାରୀ 'ଟାଇମ୍‌ସର' ପ୍ରଥମ ପୃଷ୍ଠାରେ :

'ଭୂସାପ୍ରାନ୍ତ'ର ମୁଖ୍ୟମନ୍ତ୍ରୀ ଅଚେତ ଅବସ୍ଥାରେ ଥାଇ ମଧ୍ୟ 'କ୍ୟାବିନେଟ'ର କାର୍ଯ୍ୟଭାର ଯେପରି ଭାବେ ତୁଲାଉଛନ୍ତି ଏଥିରୁ ହାଇକମାଣ୍ଡ ବର୍ତ୍ତମାନ ଗମ୍ଭୀର ଭାବେ ଚିନ୍ତା କରୁଛନ୍ତି କି ଯଦି କୌଣସି ଉପାୟରେ ଅନ୍ୟ ରାଜ୍ୟର ମନ୍ତ୍ରୀମାନଙ୍କୁ ଅଚେତ କରି ଦିଆ ଯାଆନ୍ତା ତେବେ ହୁଏତ ରାଜ୍ୟ ଶାସନ ଆହୁରି ଉତ୍ତମ ରୂପେ ଚାଳିତ ହୁଅନ୍ତା । ଏଣୁ ଏକ 'ଅଚେତ ରାଜ୍ୟ' ପ୍ରତିଷ୍ଠା କଥା ମଧ୍ୟ ଚିନ୍ତା କରାଯାଉଛି ।

ଶ୍ରୀ ଭି. ଭି. ଭୂଜାନନ୍ଦ ପ୍ରଧାନମନ୍ତ୍ରୀଙ୍କୁ ଭେଟିବା ପାଇଁ ରାଜଧାନୀ ଯାତ୍ରା କରିଛନ୍ତି ।

## ୧୦ ଫେବୃୟାରୀ 'ଟାଇମ୍‌ସ'ର ଚତୁର୍ଥପୃଷ୍ଠାରେ

ଡାକ୍ତର ବୋଲନ୍ ଅଷ୍ଟ୍ରେଲିଆ ଫେରି ଯାଇଛନ୍ତି । ସେ ମୁଖ୍ୟମନ୍ତ୍ରୀଙ୍କର ଏହି ବିଚିତ୍ର ରୋଗର କୌଣସି ପ୍ରତିକାର କରି ପାରିଲେ ନାହିଁ । ତାଙ୍କ ମତରେ ରୋଗୀକୁ ମେଣ୍ଢାଙ୍କ ବେମାରି ହୋଇନାହିଁ, ଏ ବେମାରି କେବଳ ବାରହା ସିଂହଙ୍କଠାରେ ଦେଖା ଯାଇଥାଏ । ଡାକ୍ତର ବୋଲନ୍ ବାରହା ସିଂହ ଇତ୍ୟାଦିଙ୍କ ହେଉଥିବା ରୋଗର ବିଶେଷଜ୍ଞ ନୁହନ୍ତି ବୋଲି ସେ ଫେରିଗଲେ । ବର୍ତ୍ତମାନ 'ଭୂସାପ୍ରାନ୍ତି'ର ସାତଜଣ ବରିଷ୍ଠ ଡାକ୍ତରଙ୍କୁ ନେଇ ଏକ ମେଡ଼ିକାଲ ବୋର୍ଡ଼ ଗଠନ କରାଯାଇଛି । ଯେଉଁ ବୋର୍ଡ଼ ପ୍ରତ୍ୟେକ ଦିନ ଶ୍ରୀ ଶ୍ରୀ ଗଜାନନ୍ଦଙ୍କ ସ୍ୱାସ୍ଥ୍ୟ ବିଷୟରେ ଏକ ବୁଲେଟିନ ପ୍ରସ୍ତୁତ କରି ପ୍ରକାଶ କରିବ ।

ଏହି ମେଡ଼ିକାଲ ବୋର୍ଡ଼ରେ ଶ୍ରୀ ଏସ୍. କେ. ପୋଖରି ମୁଖ୍ୟ ପଶୁଚିକିତ୍ସକ ତାଙ୍କର ସହକାରୀ ଡାକ୍ତର ଖାରାପାଣିକର ଏମ୍. ଡ଼ି., ଡାକ୍ତର ସୋଡ଼ାବାଲା, ଆର୍. ଏସ. ଭି. ପି., ଡାକ୍ତର ଦୁବ୍‌ଧା ରାଓ, କ୍ୟୁ: ଇ: ଡ଼ି:; ଏବଂ ମିସ୍ ଘାସଲେଟମ ମଧ୍ୟ ଅଛନ୍ତି । ମିସ୍ ଘାସଲେଟମ କେବଳ ସଙ୍ଗୀତ ଦ୍ୱାରା ରୋଗ ଭଲ କରିବାରେ ସିଦ୍ଧହସ୍ତ ଶୁଣାଯାଏ, ତାଙ୍କ ସଙ୍ଗୀତ ଶୁଣିବା ମାତ୍ରେ ରୋଗୀ ଭଲ ହୋଇଯାଏ ।

## ୧୧ ଫେବୃୟାରୀ 'ଅବ୍‌ଜରଭର'ର ସପ୍ତମ ପୃଷ୍ଠାରେ

ଶ୍ରୀ ଗଜାନନ୍ଦଙ୍କ ଅବସ୍ଥା ଏବେ ମଧ୍ୟ ସଙ୍କଟାପନ୍ନ ରହିଛି । ଦିନର ବିଭାଗର ରୁପ ରକ୍ତ ରୁପଠ୍ ମଧ୍ୟ ଅଧିକ ହେବାରେ ଲାଗିଛି । ନିଶ୍ୱାସ ନେଲାବେଳେ କମ ଏବଂ ଛାଡ଼ିଲା ସମୟରେ ବେଶି ପବନ ଯାଉଛି । ଏଣୁ ରାତିରେ ନର୍ସଙ୍କୁ ଅନିଦ୍ରା ରହିବା ପାଇଁ ବିଶେଷ ଅସୁବିଧା ହେଉନାହିଁ । କାଲି ରାତିରେ ମିସ୍ ଘାସଲେଟମ 'କର୍ଣ୍ଣାଟକ ସଙ୍ଗୀତ' ଶୁଣାଇଥିଲେ; କିନ୍ତୁ ତଥାପି ମଧ୍ୟ ରୋଗୀର କୌଣସି ଉନ୍ନତି ପରିଲକ୍ଷିତ ହୋଇନାହିଁ । ରୋଗୀ ସେହିପରି ଅଚେତ ଅବସ୍ଥାରେ ଅଛନ୍ତି ।

ସ୍ୱାକ୍ଷର

(୧) ମିସ୍ ଘାସଲେଟମ
(୨) ଡାକ୍ତର ସୋଡ଼ାବାଲା
(୩) ଡାକ୍ତର ଖାରାପାଣିକର
(୪) ଡାକ୍ତର ଦୁବ୍‌ଧା ରାଓ
(୫) ଡାକ୍ତର ଗୋଗୋ ବରୁମ
(୬) ଡାକ୍ତର ହରିରାମ କେରଖାନି
(୭) ଡାକ୍ତର, ଏସ. କେ. ପୋଖରି ( ପଶୁ ଚିକିତ୍ସକ )

### ୧୨ ଫେବୃୟାରୀ 'ଏକ୍ସପ୍ରେସ'ର ସପ୍ତମ ପୃଷ୍ଠାରେ

ଯେଉଁଦିନଠାରୁ ମୁଖ୍ୟମନ୍ତ୍ରୀ ଅଚେତ ଅଛନ୍ତି ତାଙ୍କ ପେଟ ଫୁଲିବାରେ ଲାଗିଛି । ଡାକ୍ତର ସୋଢ଼ାବାଲା ବିଚାର କରନ୍ତି କି ରୋଗୀ ଗର୍ଭବତୀ ଅଛି । କିନ୍ତୁ ରୋଗୀ ଯେ ପୁରୁଷ, ସ୍ତ୍ରୀ ନୁହେଁ ଏଣୁ ଗର୍ଭବତୀ କିପରି ହୋଇପାରେ ? କିନ୍ତୁ ଡାକ୍ତର ସୋଢ଼ାବାଲା ଫ୍ରାନ୍ସର ଗୋଟିଏ ପତ୍ରିକାରୁ ଏକ ଉଦାହରଣ ଦେଇ କହନ୍ତି ଯେ କୌଣସି ବିଶେଷ ଅବସ୍ଥାରେ ପୁରୁଷ ଗର୍ଭଧାରଣ କରିପାରେ । ଏହି ଘଟଣାରେ ମିସ୍ ଘାସ୍‌ଲେଟମ ଅତ୍ୟନ୍ତ ଉତ୍‌କ୍ଷିପ୍ତ ହୋଇ ପଡ଼ିଲେ ଏବଂ ସେ ମେଡ଼ିକାଲ ବୋର୍ଡ଼ର ବୁଲେଟିନ୍‌ରେ ଦସ୍ତଖତ କରିବା ପାଇଁ ମନା କରିଦେଲେ । ସେ ସନ୍ଦେହ କରନ୍ତି ଯେ ପୁରୁଷ ମିଛଟାରେ ସ୍ତ୍ରୀ ଲୋକଙ୍କ ଇଲାକା ଭିତରେ ପଶିବା ପାଇଁ ଚେଷ୍ଟା କରୁଛି ।

ଆଜି ମିସ୍ ଘାସ୍‌ଲେଟମ ଅଚେତ ରୋଗୀକୁ 'ଏମନ-କଲ୍ୟାଣ' ରାଗର ଗୋଟିଏ ଖେୟାଲ ଶୁଣାଇଛନ୍ତି ଯାହାଦ୍ୱାରା ରୋଗୀର ଅବସ୍ଥା ଅଦ୍ଭୁତ ସଙ୍ଗୀନ ହୋଇ ଉଠିଛି ଏବଂ ରୋଗୀ ବର୍ତ୍ତମାନ ସମ୍ପୂର୍ଣ୍ଣ 'କୋମା' ଅବସ୍ଥାରେ । ଅବସ୍ଥା ଏକଦମ ସଂକଟାପନ୍ନ ଏବଂ ସେଥିପାଇଁ ଇଂଲଣ୍ଡରେ ସ୍ତ୍ରୀ ରୋଗ ବିଶେଷଜ୍ଞ ଡାକ୍ତର ଟାଇମ ବର୍ଥଙ୍କୁ ଡକାଯାଇଛି ।

### ୧୩ ଫେବୃୟାରୀ 'ଷ୍ଟାଣ୍ଡାର୍ଡ଼'ର ନବମ ପୃଷ୍ଠାରେ

ଡାକ୍ତର ଦୁବିଧା ରସ୍ତୁଙ୍କ ମତରେ ରୋଗୀ ଗର୍ଭବାନ ନୁହଁନ୍ତି । ରୋଗୀଙ୍କ ପେଟରେ ଭାଷଣ ସବୁ ଜମି ଯାଇଛି । କାରଣ ଅଚେତ ହେବା ଆଗରୁ ରୋଗୀର ଭାଷଣଦେବାର ରୋଗଥିଲା ଏବଂ ବର୍ତ୍ତମାନ ଭାଷଣ ସବୁ ବାହାରକୁ ଆସି ନ ପାରିବା ଯୋଗୁଁ ପେଟ ଭିତରେ ରହି ପେଟକୁ ଫୁଲାଇ ଦେଉଛି । ଡାକ୍ତର ଦୁବିଧା ବସ୍ତୁ ଆଶଙ୍କା କରନ୍ତି—ଯଦି ରୋଗୀ ଏପରି ଭାବରେ ଅଚେତ ରୁହେ ଆଉ ଭାଷଣ ନ ଦେଇପାରେ ତାହେଲେ ରୋଗୀର ପେଟ ଫାଟିଯିବ ଏବଂ ଫଳରେ ରୋଗୀ ମରିଯିବ ।

### ୧୪ ଫେବୃୟାରୀ 'ଟାଇମ୍‌ସ'ର ପ୍ରଥମ ପୃଷ୍ଠାରେ

#### ମୁଖ୍ୟମନ୍ତ୍ରୀଙ୍କ ପେଟ ଅପରେଶନ—ଭାଷଣସବୁ ବାହାର କରାଯିବ

ଭୁସାପ୍ରାନ୍ତ ସେକ୍ରେଟେରିଏଟର ଏକ ଘୋଷଣା ଅନୁଯାୟୀ ଆଜି ସନ୍ଧ୍ୟା ପାଞ୍ଚଟାବେଳେ ମୁଖ୍ୟମନ୍ତ୍ରୀଙ୍କ ପେଟରେ ଅପରେଶନ ହେବ । ପେଟର ବାହାରେ ଏକ ମାଇକ୍ରୋଫୋନ୍ ରଖାଯିବ ଏବଂ ମାଇକ୍ରୋଫୋନ୍‌ର ଗୋଟିଏ ନଳୀ ତାଙ୍କ ପେଟରେ ଖଞ୍ଜାଯିବ ଏବଂ ଏହିପରି ଭାବରେ ପେଟରେ ଜମିଥିବା ଭାଷଣ ସବୁ ପଦାକୁ ବାହାରି ଆସିବ । ସରକାରୀ ହସ୍‌ପିଟାଲର ବାହାରେ ଜନସମାଗମ ବଢ଼ିବାରେ ଲାଗିଛି ।

ଲୋକମାନେ ଏହି ଷ୍ଟାଷଣ ସବୁକୁ ବହୁ ଉତ୍କଣ୍ଠାର ସହିତ ପିଇଯିବା ପାଇଁ ଅପେକ୍ଷା କରିଛନ୍ତି ଏବଂ ଯଦି ସମ୍ଭବ ହୁଏ, ଏ ଷ୍ଟାଷଣ ସବୁକୁ ନିଜ ନିଜର ପେଟ ଭିତରେ ରଖିବା ପାଇଁ ଅନେଇ ରହିଛନ୍ତି ।

### ୧୫ ଫେବୃୟାରୀ 'ଅବଜରଭର୍'ର ପ୍ରଥମ ପୃଷ୍ଠାରେ

ପୃଥିବୀ ପୃଷ୍ଠରେ ପ୍ରଥମ ଷ୍ଟାଷଣଯୁକ୍ତ ପେଟର ଅପରେଶନ । ମୁଖ୍ୟମନ୍ତ୍ରୀଙ୍କର ପେଟ ଚିରା ହୋଇ ତିନିଶହ ଷ୍ଟାଷଣ ବାହାର କରାଗଲା । ଡକ୍ଟର ଟାଇମ୍ ବର୍ଥଙ୍କ ପ୍ରଥମ ସଫଳ ଅପରେଶନ ।

### ୧୬ ଫେବୃୟାରୀ 'ଏକ୍ସପ୍ରେସ'ର ତୃତୀୟ ପୃଷ୍ଠାରେ

ଡାକ୍ତରଙ୍କ ବୁଲେଟିନ୍‌ର ଘୋଷଣା ଅନୁଯାୟୀ ରୋଗୀର ଅବସ୍ଥାରେ ଉନ୍ନତି ଘଟିଛି ।

### ୧୭ ଫେବୃୟାରୀ 'ଟାଇମ୍‌ସ'ର ଏଗାର ପୃଷ୍ଠାରେ

ଅବସ୍ଥା ଖରାପ ଆଡ଼କୁ ଗତି କରୁଛି ।

### ୨୫ ଫେବୃୟାରୀ 'ଟାଇମସ'ର ଦଶମ ପୃଷ୍ଠାରେ

ଆଜି ଭୁସାପ୍ରାନ୍ତର ମୁଖ୍ୟମନ୍ତ୍ରୀ ପ୍ରାୟ ଦୁଇକଲୋ ଓଜନର ଖେଚେଡ଼ି ଖାଇଲେ ଏବଂ ଦେଢ଼ କଲୋ ଓଜନର ଡାଲିପାଣି ଖାଇଲେ ଏବଂ ପ୍ରାୟ ସତର ପୃଷ୍ଠାର ଏକ ଜୋରଦାର ଷ୍ଟାଷଣ ରାଜ୍ୟବାସୀଙ୍କୁ ଦେଇ କହିଛନ୍ତି ଯେ ଏପରି ଅଚେତ ଅବସ୍ଥାର ସୁଯୋଗ ନେଇ ଅନ୍ୟ କେତେକ ନେତା (ଭଜାନନ୍ଦଙ୍କ ନାମ ଉଲ୍ଲେଖ ନ କରି) ମୁଖ୍ୟମନ୍ତ୍ରୀ ହେବାପାଇଁ ମସୁଧା ଚଳାଇଛନ୍ତି । ମୁଖ୍ୟମନ୍ତ୍ରୀଙ୍କର ବିଶ୍ୱାସ ଯେ ଜନସାଧାରଣଙ୍କ ଏହି ଧୋକାବାଜ ଲୋକଙ୍କୁ ଉଚିତ ଜବାବ ଦେବେ ।

### ୨୭ ଫେବୃୟାରୀ 'ଷ୍ଟାଣ୍ଡାର୍ଡ'ର ତୃତୀୟ ପୃଷ୍ଠାରେ

ଆଜି 'ଭୁସାପ୍ରାନ୍ତର' ମୁଖ୍ୟମନ୍ତ୍ରୀ ସ୍ୱୀକାର କରିଛନ୍ତି ଯେ ସେ ତାଙ୍କର ବେମାରି ପୂର୍ବରୁ ଦେଢ଼ଟି ତରଭୁଜ ଖାଇ ଦେଇଥିଲେ । ସେ କହିଲେ ଯେ ଏହି ତରଭୁଜକୁ କାଟି ଜନତାଙ୍କ ମଧ୍ୟରେ ବାଣ୍ଟିବା ପାଇଁ ସେ ଯାଉଥିଲେ ଏବଂ ସେହି ସମୟରେ ହିଁ ତାଙ୍କ ପେଟରେ କଷ୍ଟ ହେଲା ଏବଂ ଏହି କଷ୍ଟ ଜନସାଧାରଣଙ୍କର ଦୁଃଖଦୁର୍ଦ୍ଦଶା ଦେଖି ହିଁ ଆରମ୍ଭ ହୋଇଥିଲା ।

ମୁଖ୍ୟମନ୍ତ୍ରୀ ଆଜି ନିଜ ବିଛଣାରେ ପନ୍ଦର ମିନିଟ୍ ପାଇଁ ଉଠିବସିଛନ୍ତି । ଆଜି ତାଙ୍କ ଜଳଖିଆରେ ଭେଣ୍ଡି ଭଜା ଦିଆଯାଇଛି । ଦିନରେ ଖାଇବାବେଳେ ଦୁଇ କଲୋ ମସୁର ଡାଲିର ପାଣି ଦିଆଯାଇଛି ରାତି ଖାଇବାବେଳେ ଦୁଇକଲୋ ଶୁନ୍‌ଶୁନିଆ

ଶାଗ ଦିଆଯାଉଛି । ଏସବୁ ଖାଦ୍ୟ ଖାଇସାରିଲା ପରେ ସେ ଦେଶବାସୀଙ୍କୁ ଏକ ବାର୍ତ୍ତାରେ କହୁଛନ୍ତି ଯେ ଯଦି କୌଣସି ଦେଶ ଆମ ଦେଶ ଉପରେ ଆକ୍ରମଣ କରେ ତେବେ ଆମେ ତାର ଉଚିତ ଜବାବ ଦେବୁ ।

## ୨ ମାର୍ଚ୍ଚ 'ଏକ୍ସପ୍ରେସ'ର ଏଗାର ପୃଷ୍ଠାରେ

ଡାକ୍ତରଙ୍କ ବୁଲେଟିନ୍ ଅନୁସାରେ ମୁଖ୍ୟମନ୍ତ୍ରୀ ଆଜି ହସପିଟାଲ ଛାଡ଼ି ନିଜ ସରକାରୀ ବଙ୍ଗଳାକୁ ଫେରିଯାଇଛନ୍ତି । ନର୍ସିଂହୋମ୍‌ରେ ଡାକ୍ତରମାନେ ତାଙ୍କୁ ତନ୍ନ ତନ୍ନ କରି ପରୀକ୍ଷା କରି ତାଙ୍କୁ ସୁସ୍ଥ ବୋଲି ଘୋଷଣା କରିଛନ୍ତି । ଶରୀରର ଅଙ୍ଗ-ପ୍ରତ୍ୟଙ୍ଗ ସବୁ ଠିକ୍‌ଭାବେ କାର୍ଯ୍ୟ କରୁଛି । ସେମାନେ ମୁଖ୍ୟମନ୍ତ୍ରୀ ଶ୍ରୀ ଶ୍ରୀ ଜ. ଜ. ଗଜାନନ୍ଦଙ୍କୁ ପରାମର୍ଶ ଦେଇ କହିଛନ୍ତି ଯେ ବର୍ତ୍ତମାନ ସେ (ମୁଖ୍ୟମନ୍ତ୍ରୀ) ବିଧାନସଭା ବୈଠକରେ ନିୟମିତଭାବେ ଭାଗନେଇ ପାରିବେ ।

## ୭ ମାର୍ଚ୍ଚ 'ଷ୍ଟାଣ୍ଡାର୍ଡ଼'ର ଅଷ୍ଟମ ପୃଷ୍ଠାରେ

ଆଜି ମେଡ଼ିକାଲ ବୋର୍ଡ଼କୁ ଭାଙ୍ଗି ଦିଆ ଯାଇଛି । ଆସନ୍ତା କାଲି ମୁଖ୍ୟମନ୍ତ୍ରୀ ବିଧାନ ସଭାରେ ଶ୍ରୀ ଭୁଜାନନ୍ଦଙ୍କ ବିରୁଦ୍ଧରେ (ଦଳବିରୋଧୀ କାର୍ଯ୍ୟଯୋଗୁଁ) ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାପାଇଁ ଏକ ପ୍ରସ୍ତାବ ଆଗତ କରିବେ ।

## ୪ ମାର୍ଚ୍ଚ 'ଟାଇମ୍‌ସ'ର ପ୍ରଥମ ପୃଷ୍ଠାରେ

ଆଜି ଅସ୍ୱାଭାବିକ ଭାବେ ବିଧାନ ସଭା କକ୍ଷକୁ ଯିବା ବାଟରେ ହାର୍ଟଫେଲ ହୋଇ ମୁଖ୍ୟମନ୍ତ୍ରୀ ଶ୍ରୀ ଗଜାନନ୍ଦ ମୃତ୍ୟୁବରଣ କରିଛନ୍ତି ।

ସହରରେ ପୂର୍ଣ୍ଣ ହରତାଳ ପାଳନ କରାଯାଇଛି । ତରଭୁଜ ଖାଇବା ପାଇଁ ନିଷେଧାଜ୍ଞା ଜାରି କରାଯାଇଛି ।

ନୂତନ ମନ୍ତ୍ରୀମଣ୍ଡଳ ଗଠନ ପାଇଁ ଶ୍ରୀ ଭ. ଭ. ଭୁଜାନନ୍ଦଙ୍କୁ ହାଇକମାଣ୍ଡ ଜଣାଇଛନ୍ତି ।



# ନୂଆ ଘାସ—ପୁରୁଣା ଘାସ

ଜେଲଖାନାର ବଗିଚାରେ ନୂଆ ଘାସ ଲଗା ହେଉଥିଲା । ଏଥିପାଇଁ ପୁରୁଣା ଘାସକୁ ଖୋଳି ବାହାର କରି ଦିଆ ହେଉଥିଲା । କଇଦୀମାନଙ୍କୁ ଭାଗ ଭାଗ କରି ବିଭିନ୍ନ ଜାଗାରେ ଏହି କାମରେ ଲଗାଇ ଦିଆ ଯାଇଥିଲା । ପାଗ ଖୁବ୍ ସୁନ୍ଦର ଥିଲା । ଖରା ଚମକୁ ଥିଲା, ଜେଲର ପହରାବାଲା ଖୁବ୍ ଖୁସିଥିଲେ-କାମ ଧିରେ ଧିରେ ଆଗଉଥିଲା ।

ତାପରେ···? ଦୌଲତ କୋଦାଳରେ ଘାସ ହାଣୁ ହାଣୁ ସ୍ମିସିନ୍‌କୁ ପଚାରିଲା ।

ସ୍ମିସିନ୍ କହିଲା-ତାପରେ ମୁଁ ସୁରଟରୁ ବମ୍ବେ ଆସିଲି । ଶମଶାଦ୍ ପାଇଁ ମୁଁ ବେଶୀ ପଇସା ରୋଜଗାର କରିବା ପାଇଁ ଇଚ୍ଛା କରୁଥିଲି—ଏଥିପାଇଁ ଭାବିଲି ବଡ଼ ସହରରେ ବଡ଼ କାମ ମିଳିଯିବ—ଏଥିପାଇଁ ଏଠିକୁ ଚାଲି ଆସିଲି । ଆଉ 'କାବୁଲଲେନ୍'ରେ ବହ୍‌ମିଲ୍‌ହା ମୋଟର ଗ୍ୟାରେଜରେ ମେକାନିକ୍ ବନିଗଲି । ଦିନକୁ ମୋତେ ଆଠଟଙ୍କା ମିଳିଗଲା । ସୁରଟ୍‌ରେ ମାତ୍ର ତିନି ଟଙ୍କାରୁ ଚାରି ଟଙ୍କା ଯାଏ ମିଳୁଥିଲା । ଗ୍ୟାରେଜର ମାଲିକ ରହିମ ଭାଇ ମୋର କାମ ଦେଖି ଖୁସି ହୋଇଗଲା । ସେ ମୋତେ ଗ୍ୟାରେଜ ପାଖରେ ରହିବା ପାଇଁ ଗୋଟିଏ ଝୁଂପୁଡ଼ି ତିଆରି କରିଦେଲା । ଶମଶାଦ୍ ସେହି ଛୋଟ ଝୁଂପୁଡ଼ିକୁ ନିଜର ତିଆରି ହେବା ଘରଠୁ ବଳି ସଫାସୁତୁରା ଏବଂ ଚକ୍‌ଚକ୍ କରି ରଖିଲା । ମୁଁ ଖୁବ୍ ଖୁସିରେ ଥିଲି । ଗୋଟିଏ ଛୋଟିଆ ଘର ଏବଂ ଇଜ୍ଜତ ସହିତ ଦୁଇ ଟାଇମ୍ ରୋଟି, ଏପରି ସୁନ୍ଦରୀ ଆଉ ବୁଦ୍ଧିମତୀ ପତ୍ନୀ । ଆଉ ଏ ଦୁନିଆରେ ମଣିଷକୁ କଣ ଦରକାର ?

"ତାପରେ" ? ଦୌଲତ୍ କୋଦାଳ ଛାଡ଼ିଦେଇ ଓଲଟା ହାତରେ ମୁହଁରୁ ଝାଳ ପୋଛିଲା ।

ତାପରେ ମୁଁ ଘରେ ସୁରଟ୍ ଗଲି । ମା ବହୁତ ବେମାର ଥିଲା, ଚିଠି ଆସିଥିଲା । ମୁଁ ମା ପାଖକୁ ପ୍ରତି ମାସରେ ଷାଠିଏ ଟଙ୍କା ପଠାଉଥିଲି । କେବେ କେବେ ଅଶୀଟଙ୍କା ମଧ୍ୟ ପଠାଉଥିଲି ପୁଣି ଓଭରଟାଇମ୍ କରି ତାଠୁ ବେଶୀ

ରୋଜଗାର କରୁଥିଲି । ରହିମ ଭାଇର ଗ୍ୟାରେଜ ବହୁତ ଭଲରେ ଚାଲୁଥିଲା । ସେ ମୋ ପ୍ରତି ଖୁବ୍ ଦୟା ରଖୁଥିଲା । ବେଳେ ବେଳେ ମୋ ସ୍ଲେଟ କୁଡ଼ିଆକୁ ଚାଲି ଆସୁଥିଲା ଏବଂ ଭଲ ମନ୍ଦ ବିଷୟରେ ପଚାରି ବୁଝୁଥିଲା ।

ହେଡ୍ ମେକାନିକ 'ରାମରଙ୍ଗ' ମଧ୍ୟ ଖୁବ୍ ଭଲ ଲୋକ ଥିଲା । ମୋର ଦରମା କେବେ କାଟୁ ନ ଥିଲା ।

ଯେତେବେଳେ ଛୁଟି ଆସିଲା ମୁଁ ଚିଠିରୁ ଜାଣିଲି ମା ଦେହ ଖରାପ । ମୁଁ ଛୁଟି ନେଇ ରହିମ୍ ଭାଇ ପାଖକୁ ଗଲି । ସେ ମୋତେ ଅଶୀ ଟଙ୍କା ଆଡ୍‌ଭାନ୍ସ ଦେଲା । ମୁଁ ତିରିଶ ଟଙ୍କା ଶମସାଦକୁ ଦେଲି ଆଉ ବାକି ପଚାଶ ଟଙ୍କା ପକେଟରେ ରଖି ମାକୁ ଦେଖିବାକୁ ସୁରଟ୍ ଗଲି । ଘରେ କହିଗଲି, ସାତ ଦିନ ପରେ ଆସିବି ।

'ତାପରେ ?'' ଦୌଲତ ପଚାରିଲା ।

ସୁଆମିନ୍ ଜୋର୍‌ରେ କୋଦାଳ ମାରିଲା ଏବଂ ଗୋଟିଏ ବଗ୍ୱଟ ଘାସ ବୁଦାକୁ ଉଠାଇ ତାକୁ କେମିତିଆ ଘୃଣା ନଜରରେ ଦେଖିଲା ଏବଂ ପଛ ଆଡ଼କୁ ଫୋପାଡ଼ି ଦେଲା ।

''ପୁଣି ସେଠାରେ ମୋତେ ସାତଦିନ ବଦଳରେ ବାରଦିନ ରହିବାକୁ ପଡ଼ିଲା କାରଣ ମା ବହୁତ ବେମାର ଥିଲା । ଯେତେବେଳେ ସେ ଭଲ ହେଲା ସେତେବେଳେ ମୁଁ ସୁରଟ୍ ଛାଡ଼ିଲି । ଟିକେଟ୍ ପଇସା ଧାର ଆଣିଲି—ଘରେ ପହଁଚିଲି, ଗାଧୋଇଲି ଲୁଗାପଟା ବଦଳାଇଲି, ଖାଇସାରି ଖଟ ଉପରେ ଶୋଇଗଲି । ଶମ୍ଶାଦ ଆସି ମୋ ଗୋଡ଼ ମୋଡ଼ିବାକୁ ଆରମ୍ଭ କଲା ଏବଂ ମୋଡ଼ୁ ମୋଡ଼ୁ କାନ୍ଦିଲା । ମୁଁ ଖଟ ଉପରେ ଉଠି ବସିଲି ।

''ଘଟଣା କଣ ଶାମୀ ?

ସେ ସେହି କାନ୍ଦର ଲହରୀ ଭିତରେ ଉତ୍ତର ଦେଲା—ତୁମେ ଗଲାପରେ ଗ୍ୟାରେଜର ମାଲିକ ଏଠାକୁ ଆସିଥିଲା । କେତେ ଥର ଆସିଥିଲା—ଖରାପ କଥା ସବୁ କହୁଥିଲା ।'' ''କଣ କହୁଥିଲା ?'' ମୁଁ ରାଗରେ କଂପିବାକୁ ଲାଗିଲି ''କହୁଥିଲା ଶହେ ଟଙ୍କା ଦେବ ।''

ପୁଣି ......... ?

ମୁଁ ଭିତରୁ କବାଟ କିଳିଦେଲି-ସେ ଚାଲିଗଲା । ଦ୍ୱିତୀୟ ଦିନ ପୁଣି ଆସିଥିଲା । କହୁଥିଲା ଦୁଇଶହ ଦେବ, ମୁଁ ପୁଣି କବାଟ ବନ୍ଦ କରି ଦେଲି ।

ଦୁଇଦିନ ପରେ ପୁଣି ଆସିଲା—କହିଲା ଯଦି ନ ମାନନ୍ତି ତେବେ ତତେ ଉଠାଇ ନେଇ ଯିବ—ଯଦି ମାନିଯାଅ ତ ତତେ ସୁନାର ଚୁଡ଼ି କିଣି ଦେବ ।"

ତୋ ସ୍ତ୍ରୀ ତେବେ ବହୁତ ସୁନ୍ଦର ।" ଦୌଲତ, ଅନ୍ଧାରେ ପଚାରିଲା ।

"ହଁ ତ...ସ୍ୱାମିନ ସ୍ୱୀକାର କଲା । ତୁ ଟା ବଡ଼ ଭୁଲ କଲୁରେ—ଦୌଲତ ବଡ଼ ଦୁଃଖରେ କହିଲା—ଗରିବ ଲୋକ କେବେହେଲେ ସୁନ୍ଦରୀ ସ୍ତ୍ରୀକୁ ବିବାହ ହେବା ଉଚିତ ନୁହେଁ ।

"କାହିଁକି ?"

ପାଖରେ ରହି ପାରେନା—ଦୌଲତ ଉତ୍ତର ଦେଲା— । ସୌନ୍ଦର୍ଯ୍ୟ ମଧ୍ୟ ଗୋଟେ ପ୍ରକାରର ଧନ ସମ୍ପତ୍ତି—ଗରିବ ଆଉ ଧନ ଏସବୁ ଜମା ମେଳ ଖାଆନ୍ତି ନାହିଁ ।"

ତେବେ ତୋ ବାପା ମାଆ ତୋ ନାଁ ଦୌଲତ କାହିଁକି ରଖିଲେ । ସେମାନେ ବଡ଼ ଭୁଲକଲେ ନା ବଡ଼ ଅନ୍ଧ ଦର୍ଶନ ଗ୍ରେଟ । ଆଚ୍ଛା ତୁ ବର୍ତ୍ତମାନ ନିଜ କଥା କହ—ପୁଣି କ'ଣ ହେଲା ? ପୁଣି ମୋ ରାଗ ଚଢ଼ିଗଲା । ମୁଁ ଶମସାଦ୍‌କୁ ଖୁବ୍ ଜୋର୍‌ରେ ଏକ ଚଟକଣା ମାରିଲି ଏବଂ କହିଲି—ଆଉ ତୁ ଶାଳୀ ମାନିଗଲୁ । ସୁନା ଚୁଡ଼ିର ଲୋଭରେ ପଡ଼ି ନିଜର ଇଜ୍ଜତ ହରାଇଲୁ—ହାରାମଜାଦୀ । ସେ ଖୁବ କାନ୍ଦିବାକୁ ଲାଗିଲା—କହିଲା ତମ ରାଣ ଖାଉଛି ତମ ମୁଣ୍ଡ ଖାଉଛି ମୋ ଦେହରେ ଆଜି ପର୍ଯ୍ୟନ୍ତ ତମ ଛଡ଼ା ଆଉ କାହାର ହାତ ଲାଗିନି ।

କିଛି ସମୟ ରହି ପୁଣି ଶାମୀ କହିଲା—ତା କଥା ଶୁଣି ମୁଁ ଏକଦମ ରାଗିଗଲି । ମୁଁ ସେଠ୍‌କୁ ବହୁତ ଗାଳି ଦେଲି—ଏତେ ଗାଳିଦେଲି ଯେ ଶେଷକୁ ପଡୋଶୀମାନେ ସବୁ ଉଠି ଆସିଲେ ଆଉ ସେହି ଦିନଠାରୁ ତମ ସେଠ୍ ଆଉ ଏଠିକୁ ଆସିଲା ନାହିଁ ।

ସେ ଖୁବ୍ ଜୋରରେ କାନ୍ଦିବାକୁ ଲାଗିଲା । ଏଥର ମୁଁ ତାକୁ ଆଉ ସାନ୍ତ୍ୱନା ଦେଲି ନାହିଁ । କୌଣସି ଆଶ୍ୱାସନା ଦେଲି ନାହିଁ—ତା ମୁଣ୍ଡ ଉପରେ ହାତ ରଖିଲି ନାହିଁ । ଖଟରୁ ଉଠିଲି—ବାହାରକୁ ଆସି ସିଧା ଗ୍ୟାରେଜରେ ପହଁଚିଲି, ଜଣାପଡ଼ିଲା ସେଠ୍ ରହିମଭାଇ ଗ୍ୟାରେଜରେ ନାହିଁ, ପେଟ୍ରୋଲ ପମ୍ପରେ ଅଛି । ମୁଁ ପେଟ୍ରୋଲ ପମ୍ପକୁ ଗଲି, ସେଠ୍ ଭିତରେ ବସି ହିସାବ କରୁଥିଲା । ମୁଁ ସିଧା ଭିତରକୁ ଚାଲିଗଲି ।

ଭିତରକୁ ଯାଇ ସିଧା ତାକୁ ଛୁରୀ ମାରିଦେଲି—ରହିମ୍ ଭାଇ ମଧ୍ୟ ବହୁତ ଟାଣୁଆ ଲୋକ । ସେ ମୋ ସାଙ୍ଗରେ ଲାଗିଗଲା । କିନ୍ତୁ ଛୁରୀ ମୋ ହାତରେ

ଥିଲା—ମୁଁ ତାକୁ ଦୁଇ ତିନଥର ଛୁରି ମାରିଲି—ପାଟି ଶୁଣି ପାଖରେ କାମ କରୁଥିବା ଅନ୍ୟଲୋକ ସବୁ ଦଉଡ଼ି ଆସି ମତେ ଧରି ପକେଇଲେ ଆଉ ସେଇଦିନ ଠାରୁ ମୁଁ ଦେଢବର୍ଷର ଏ ଜେଲଦଣ୍ଡ ଭୋଗୁଛି ।

"ଆଉ ଶମଶାଦ୍ ?

"ତାର କିଛି ପତ୍ତା ନାହିଁ ।

କ'ଣ ସେ... ? ଦୌଲତର ମୁହଁକୁ ବାହାରି ଗଲା ।

ସ୍ୱାମିନ କୋଦାଳ ହାତରୁ ଛାଡ଼ିଦେଲା । ପହରାଦାରଙ୍କୁ ପିଠିକରି ସେ ମୋ ଆଡ଼େ ଅନାଇ ବସିଗଲା ଏବଂ ବଡ଼ି ଟାଣିବାକୁ ଲାଗିଲା । ବଡ଼ି ଟାଣି ସାରିଲା ପରେ କହିଲି, ପ୍ରଥମେ ପ୍ରଥମେ ସାକ୍ଷାତକାରର ସମୟରେ ସେ ଠିକ୍ ଆସୁଥିଲା । ଦୁଇମାସ ପର୍ଯ୍ୟନ୍ତ ସେ ଠିକ ଆସିଲା । ମା ମଧ୍ୟ ସୁରଟରୁ ଆସି ଯାଇଥିଲା । ସେ ଦୁଇଶହ ଟଙ୍କା ସାଇତି ରଖିଥିଲା । ଦୁଇମାସରେ ଖର୍ଚ୍ଚ ହୋଇଗଲା । ପୁଣି ଉଧାର ଆରମ୍ଭ ହୋଇଗଲା । ଯେତକ ରୁପାର ଅଲଙ୍କାର ତା ପାଖରେ ଥିଲା ସେତକ ମଧ୍ୟ ବନ୍ଧା ହୋଇଗଲା । ଘର ଖଟ, ବାସ୍ନଣ ମଧ୍ୟ ବନ୍ଧା ହୋଇଗଲା । ଏମିତି କୌଣସି ମତେ ଚାରି ମାସ ପୁଣି ଉଧାରରେ କଟିଲା । ପାଞ୍ଚ ମାସ ପରେ ଯେତେବେଳେ ପୁଣି ସାକ୍ଷାତ କରିବାର ସମୟରେ ସେ ଅସେ ତାର ଅବସ୍ଥା ବଡ଼ ଦୟନୀୟ ହୋଇ ପଡ଼ିଥିଲା ଏବଂ ତାକୁ ଦେଖି ମତେ କାନ୍ଦ ମାଡ଼ିଲା । ଭାବୁଥିଲି ଛୁରିଟା ରହିମ ଭାଇର ଠିକ ଛାତିରେ ନ ଲାଗି ଇଆଡ଼େ ସିଆଡ଼େ କାହିଁକି ଲାଗିଲା । ମୋତେ ଜେଲରୁ ଖଲାସ କରି ନ ଯାଇ ଫାଶି ଦଆ ଯାଇଥିଲେ ଖୁବ୍ ଭଲ ହୋଇଥାନ୍ତା ?

ତା'ପରେ !

ତାପରେ ଦିନେ ରାତିରେ ସ୍ୱମରଂଗ ହେଡ଼ ମେକାନିକ ଲୁଚାଇ କରି ତିରିଶ ଟଙ୍କା ଆଣି ଶମଶାଦ ହାତରେ ଦେଇ ଚାଲିଗଲା । ସେଥିରେ କିଛି ଦିନ ଚାଲିଗଲା । ମା ଦୁଇତିନ ଜଣଙ୍କ ଘରେ ଚାକରାଣୀ କାମକଲା । ସେଥିରୁ କିଛି ପଇସା ଆସିଲା । ଅଧାଦିନ ଖାଇବାକୁ ଗଣ୍ଡିଏ ମିଳିଲା ତ ଅଧାଦିନ ଉପବାସ । ପୁଣି ଦିନେ ରାତିରେ ସ୍ୱମରଂଗ ଆସି ଲୁଚାଇ କରି କୋଡ଼ିଏ ଟଙ୍କା ଦେଇଗଲା । ଆଉ ସେ କହୁଥିଲା ଯଦି ସେଠ୍ ଜାଣିବ ଯେ ମୁଁ ସ୍ୱାମିନର ସ୍ତ୍ରୀକୁ ସାହାଯ୍ୟ କରୁଛି ତେବେ ମତେ ସେ କାମରୁ ବାହାରି ଦେବ । ମୋର ମା ତାକୁ ତାର ସହୃଦୟତା ଦେଖି ଆଶୀର୍ବାଦ କଲା ।

ଶମଶାଦ ତାକୁ ଭାଇ ଭଳି ବ୍ୟବହାର ଦେଖାଇଲା । ପୁଣି ଆଉଥରେ ଯେତେବେଳେ ମୋ ସ୍ତ୍ରୀ ଏବଂ ମୋ ବୁଢ଼ୀ ଦୁଇଦିନ ଧରି ଉପବାସ ଥିଲେ,

ରାମରଂଗ ପନ୍ଦର ଟଙ୍କା ନେଇ ଆସିଲା । ମା ତାକୁ ଆଶୀର୍ବାଦ କଲା । ଶମଶାଦ ତା'ର ଭାଇ ପାଇଁ ରୁଟି ତିଆରି କଲା, ତାକୁ ଖୁଆଇଲା, ବର୍ଷା ଖୁବ ଜୋର୍‌ରେ ହେଉଥିଲା । ମା ତାକୁ କହିଲା ଏମିତିଆ ପାଗରେ ତୁ ଆଉ କୁଆଡ଼େ ଯିବୁ, ଏଇଠି ରହିଯା । ରାମରଙ୍ଗ ମାନିଗଲା । ସେଇଠି ଶୋଇଗଲା । କିନ୍ତୁ ରାତିରେ ସେ ମୋ ସ୍ତ୍ରୀର ହାତ ଧରି ପକାଇଲା । ଶମଶାଦ୍ ପାଟି କରି ଉଠିଲା । କିନ୍ତୁ ଲୋକମାନେ ଜମାହେବା ପୂର୍ବରୁ ରାମରଂଗ ତାଆଁ ମାରି ପଳାଇଲା ।

ଏକଥା ଶୁଣି ଦୌଲତ ବଡ଼ ଉଦାସକଣ୍ଠରେ କହିଲା 'ରାମ ଓ ରହିମ୍ ଦୁଇଜଣ ଯାକ ଶେଷକୁ ଗରିବର ଇଜ୍ଜତରେ ଶିଙ୍ଘ ଖାଜିଲେ...' ।

ଦୁଇଜଣ ଯାକ କିଛିକ୍ଷଣ ଧରି ଚୁପ୍ ରହିଲେ—ଘାସ ଖୋଳିବାକୁ ଲାଗିଲେ । ଶେଷକୁ ସ୍ୱାମିନ୍ ମନକୁ ମନ କହିଲା—'ତଥାପି ମଧ୍ୟ ସେ ଆସୁଥିଲା ।' କିନ୍ତୁ ତା ଯିବା ଆସିବାର କୌଣସି ନିୟମିତ ନ ଥିଲା ବର୍ତ୍ତମାନ ଯେଉଁ ସ୍ତ୍ରୀ ଲୋକଟି ମୋ ପାଖକୁ ଆସୁଥିଲା ସେ ମୋର ସ୍ତ୍ରୀ କଥିଲା । ଶମଶାଦ୍ ବହୁତ ବୁଢ଼ି ଯାଇଥିଲା । ତା ଦେହର ହାଡ଼ ବାହାରିହୋଇ ପଡ଼ୁଥିଲା । ତା ଅବସ୍ଥା ଦେଖି ମତେ ଦୁଃଖ ଆସୁଥିଲା । ମୁଁ ମଧ୍ୟ ତାକୁ ପଚାରି ପାରୁ ନଥିଲି ତାହାର ଏପରି ଦୟନୀୟ ଅବସ୍ଥା କାହିଁକି ହୋଇଛି, ମା କିପରି ଅଛି, ତୋ ଦିନ କିପରି କଟୁଛି । ତୁ କାହିଁକି ଦିନକୁ ଦିନ ଶୁଖି ଯାଉଛୁ । ପଚାରିକି ଲାଭ ବା କଣ ? 'ତୁ ଠିକ୍ କହୁଛୁ, ଦୌଲତ ଉଦାସ କଣ୍ଠରେ କହିଲା ଯେପରି ତାର କିଛି ମନେ ପଡ଼ିଗଲା ।

ତା' ପରେ ଆଉଥରେ ଯେତେବେଳେ ସେ ଆସିଲା, ଆଜକୁ ପ୍ରାୟ ଚାରି ମାସ ତଳର କଥା । କହିଲା -'ରହିମ ଭାଇ ମତେ ରଖିବାକୁ କହୁଛି'...କହୁଛି କାହିଁକି ନିଜର ଯୌବନକୁ ନଷ୍ଟ କରୁଛୁ ? କାହିଁକି ଶୋକରେ ସଢ଼ୁଛୁ ? ଆ ମୋ ପାଖକୁ ଚାଲିଆ ତତେ ସୁନାର କଙ୍କଣ ପିନ୍ଧାଇବି । ପଙ୍ଖା ଥିବା ଘରେ ରଖାଇବି । ସିଲ୍‌କ ଶାଢ଼ୀ ଦେବି । ରେଡ଼ିଓ ଦେବି । ସବୁ କିଛି ଦେବି । ଏସବୁ କହି ମତେ କେମିତି ଏକ ଉତ୍କଣ୍ଠା ଆଖିରେ ଅନେଇଲା ଯେପରିକି କିଏ ଯେମିତି ତା ବେକ ଉପରେ ଛୁରି ରଖିଛି ଆଉ ସେ ମତେ ପଚାରୁଛି - କହ ବର୍ତ୍ତମାନ ମୁଁ କଣ କହିବି ?' 'ଆଉ ମୁଁ କଣ କହିବି । ମୁଁ ମୁଣ୍ଡ ନୁଆଁଇ ଚୁପ୍ ରହିଗଲି ଏବଂ ସେ ମଧ୍ୟ କିଛି ସମୟ ପର୍ଯ୍ୟନ୍ତ ମୁଣ୍ଡ ନୁଆଁଇ ମୋ ସାମନାରେ ଠିଆ ହୋଇ ଅଶ୍ରୁବର୍ଷଣ କରିବାରେ ଲାଗିଲା । ମୁଁ ଓ ସେ ସାମନାସାମନି ଥିଲୁ । ମୁଁ ତାର ସ୍ୱାମୀ ଏବଂ ସେ ମୋର ସ୍ତ୍ରୀ କିନ୍ତୁ ଆମ ଦୁହିଁଙ୍କ ମଝିରେ ଏକ ଲୁହାର ଜାଲି ଥିଲା ସେ ଜେଲର ଜାଲିକୁ ମୁଁ ଧକ୍‌କା ମାରି ଭାଙ୍ଗିଦେଇ ପାରେ, ମୋ ହାତ ବହୁତ ଶକ୍ତ କିନ୍ତୁ ଦୌଲତ ଭାଇ । ମୁଁ ଏ ଜାଲି କେମିତି ଭାଙ୍ଗି ପାରିବି ଯାହାକି ଅଦୃଶ୍ୟ ଭାବେ ମୋ ସାମନାରେ ଠିଆ ହୋଇଛି...?

'ବହୁତ ସମୟ ପର୍ଯ୍ୟନ୍ତ ମୁଁ କିଛି କହିପାରିଲି ନାହିଁ— ସେ ମଧ୍ୟ କିଛି ନକହି କିଛି ମୋଠୁ ନଶୁଣି ଚାଲିଗଲା —ଆଉ କେବେ ଆସିଲା ନାହିଁ ।

ଆଜକୁ ଚାରି ମାସ ହୋଇଗଲାଣି—ମୋ ଜେଲଦଣ୍ଡ ଆଉ ଛ' ମାସ ବାକି ରହିଛି । ତଥାପି ମୁଁ ଭାବେ ଯଦି ତୁଳସୀ ସତରେ ରହିମ୍ ଭାଇର ଘରେ ଚାଲି ଯାଇଥାଆନ୍ତା ତେବେ କେଡ଼େ ମଜା ହୁଅନ୍ତା···। ମୁଁ ବାକି ଜୀବନ ଏଇ ଜେଲରେ କାଟି ଦିଅନ୍ତି ।'

ୟାସିନର କଣ୍ଠ ଭରି ଆସୁଥିଲା । କିନ୍ତୁ ସେ ସାରା ଦୁଃଖକୁ ଭୁଲିଯାଇ କୋଦାଳରେ ଘାସ ଖୋଳିବାରେ ଲାଗିଲା । ୟାସିନ୍ ଏବଂ ଦୌଲତ ବହୁତ ସମୟ ପର୍ଯ୍ୟନ୍ତ ଘାସ ସବୁକୁ ଖୋଳିବାରେ ଲାଗିଲେ ।

ତାପରେ ଜେଲର ସାହେବ ଦୁଇ ତିନିଜଣ କଇଦି ଏବଂ ପହରାଦାର-ମାନଙ୍କୁ ନେଇ ବଗିଚା ଭିତରକୁ ଆସିଲେ ଏବଂ ସିଧା ସେ ଦୁଇ କଏଦୀଙ୍କ ସାମନାରେ ଠିଆ ହୋଇଗଲେ । ଜେଲର ସାହେବଙ୍କ ମୁହଁରେ ହସ ଫୁଟି ଉଠୁ-ଥିଲା—ୟାସିନ୍ ତରତର ତାଙ୍କୁ ଦେଖିବାକୁ ଲାଗିଲା ।

ଜେଲର ସାହେବ ଟିକିଏ ପଛକୁ ହଟିଯାଇ ଆଉ ଜଣେ କଏଦୀ ଆଡ଼କୁ ଇସାରା କରି ୟାସିନ୍‌କୁ ପଚାରିଲେ—ଏଙ୍କୁ ଚିହ୍ନି ପାରୁଛ···?'

ୟାସିନ୍ ସିଧା ଠିଆ ହୋଇଗଲା···ଶମ୍ମୀ···!' ତା ମୁହଁ ଚମକି ଉଠିଲା ।

ଶମ୍‌ଶାଦ୍ ଖୁସିରେ ହସୁଥିଲା । ଜଣାପଡ଼ୁଥିଲା ଯେପରି ତାର କଏଦୀ ହେବାପାଇଁ ଜମା ଦୁଃଖ ନାହିଁ ।

'ତୁ କିପରି ଏଠିକୁ ଆସିଲୁ ?' ୟାସିନ୍ ବଡ଼ ଆଶ୍ଚର୍ଯ୍ୟର ସହିତ ତାକୁ ପଚାରିଲା ।

ଶମ୍‌ଶାଦ କହିଲା, ମୁଁ ଗତଥର ତମକୁ ସାକ୍ଷାତ କରି ଯେତେବେଳେ ଫେରିଗଲି ଠିକ ତାର ଦୁଇଦିନ ପରେ ମତେ କାସିମ୍ ଭାଇର ପାଖରେ ଆସ୍ଥାର କାମ ମିଳିଗଲା । କାସିମ୍ ଭାଇର ପେଟ୍ରୋଲ ପମ୍ପ ଚୌରଙ୍ଗୀ ପାଖରେ । ସେ କହୁଥିଲା ତମକୁ ଜାଣିଛି ବୋଲି । ସେ ତ ମତେ ଏବଂ ମାକୁ ବହୁତ ଆରାମରେ ରଖିଲା । ବୁଢ଼ା ଲୋକ ସେ । ତାର ପରିବାରରେ ଅଛନ୍ତି, ସ୍ତ୍ରୀ ପୁଅ ଝିଅ ସମସ୍ତେ । ମୁଁ ବହୁତ ଖୁସି ଥିଲି, କିଛିଦିନରେ ମୋ ଚେହେରା ବଦଳିଗଲା । ଭାବିଲି ଦଶଦିନ ପରେ ଯାଇ ତମକୁ ଏ ଖୁସିର ଖବର ଦେବି—କିନ୍ତୁ ସାତ ଆଠ ଦିନ

ଯାଉଛୁ କି ନାହିଁ କାସିମ୍ ଭାଇ ଘରକୁ ଅତିଥିମାନେ ଆସିଲେ । ଘରେ କାମ ବଢ଼ିଗଲା । ଏଣେ ରାତିରେ ମୁଁ ତୁଆମାନଙ୍କୁ ଶୁଆଇ ସାରିବା ପରେ ଶୋଇବା ପାଇଁ ଯାଉଥିଲି—କାସିମ୍ ଭାଇ ମତେ ଡାକି କହିଲେ—ଆମ ଘରେ ମୌଲଭୀ ସାହେବ ରହୁଛନ୍ତି ତାଙ୍କ ରୁମ୍‌ରେ ଏ ଫଳ ପ୍ଲେଟ୍‌ନେଇ ରଖି ଦେଇଆସ ।

"ମୁଁ ଫଳପ୍ଲେଟ୍ ଆଉ ଫଳକଟା ଛୁରୀ ନେଇ ସେ ରୁମ୍‌କୁ ଗଲି—ମୌଲଭୀ ସାହେବ ପଲଙ୍କ ଉପରେ ମୋ ଆଡ଼କୁ ପିଠି କରି ବସିଥିଲେ । ଶବ୍ଦ ଶୁଣି ମୋ ଆଡ଼େ ଅନେଇଲେ—ମୁଁ ଚମକି ଗଲି—ସେ ଥିଲେ ରହିମ୍ ଭାଇ ।"

"ମୁଁ ଖୁବ୍ ଜଲଦି ପ୍ଲେଟ୍‌କୁ ଟେବୁଲ ଉପରେ ରଖିଦେଲି ଏବଂ ଫେରି-ଆସିବାକୁ ଚେଷ୍ଟା କରନ୍ତେ ରହିମ ଭାଇ ମତେ ଖୁବ୍ ଜୋର୍‌ରେ ଧକ୍କା ଦେଇ ପଲଙ୍କ ଉପରେ ପକାଇ ଦେଲେ ଏବଂ ନିଜେ ଯାଇ କବାଟ କିଳିଦେଲେ··· ମତେ ସୁଯୋଗ ମିଳିଗଲା—ଯେତେବେଳେ ସେ ଖଟ ପାଖକୁ ଫେରନ୍ତି ତ ମୋ ହାତରେ ଫଳକଟା ଛୁରୀ । ଆଉ ହୃଦୟରେ ଭଗବାନଙ୍କ ନାମ । ସେ ଚୁପ୍ ହୋଇଗଲା ।"

ଜେଲର ସାହେବ ହସିକରି କହିଲେ—ମତେ ଏମିତିଆ ମନେ ହେଉଛି ଯେ କାସିମ ଭାଇ ରହିମ ଭାଇ ସଲାସୁତୁରା କରିଥିବେ । ଏ ମଧ୍ୟ ସମ୍ଭବ ହୋଇପାରେ ଯେ ରହିମ ଭାଇର ଅନୁରୋଧରେ ହିଁ କାସିମ ଭାଇ ଶାମୀକୁ ଆୟା ରୂପେ ରଖିଥିବ । କାରଣ କାସିମ ଭାଇ କୋର୍ଟରେ ରହିମ ଭାଇର ବିପକ୍ଷରେ ବୟାନ ଦେଇଥିଲା । ସେ ଓଲଟି କହିଲା ଯେ ରହିମ ଭାଇ ଚୋରି କରିବା ପାଇଁ ତା ଘରେ ପଶିଥିଲା ଏବଂ ଏହା ମଧ୍ୟ କହିଥିଲା ଯେ ରହିମ ଭାଇ ନାଁରେ ଆଗରୁ ମଧ୍ୟ ଚୋରିକେଶ କେତେଟା ଥିଲା । ଏଇଥିପାଇଁ ଶମଶାଦ୍‌ର ବୟାନକୁ ବିଶେଷ କିଛି ଗୁରୁତ୍ୱ ଦିଆଯାଇ ନ ଥିଲା । ରହିମ ଭାଇ କୌଣସିମତେ ବଞ୍ଚି ଯାଇଥିଲା କିନ୍ତୁ କୋର୍ଟ ଦୟାକରି ତୁମର ସ୍ତ୍ରୀକୁ କେବଳ ଦଶମାସର କାରାଦଣ୍ଡ ଆଦେଶ ଦେଇଛି । ଚାରିମାସ ହେଲା ଶମଶାଦ୍ ଅନ୍ୟ ଜେଲରେ ଥିଲା, ଆଜି ଏହି ଜେଲକୁ ବଦଳି ହୋଇଛି । ତମେ ଦୁଇଜଣ ଏକାଠି ହିଁ ଏ ଜେଲରୁ ଛ' ମାସ ପରେ ଖଲାସ ହେବ—ଖୁସି ହୋଇଯାଅ ।"

"ହେ ମୋର ଭଗବାନ—" ୟାସିନ୍ ଏକଦମ ଖୁସିରେ ନାଚି ଉଠିଲା—ସେ ନିଜକୁ ଭୁଲିଯାଇ ଶମ୍‌ଶାଦ୍‌କୁ ସମସ୍ତଙ୍କ ସାମନାରେ କୁଣ୍ଢାଇ ପକାଇଲା—

ପୁଣି ପରମୁହୂର୍ତ୍ତରେ ଲଜେଇଯାଇ ତାକୁ ଛାଡ଼ିଦେଲା । ଜେଲର ସାହେବ ହସିବାକୁ ଲାଗିଲେ—କହିଲେ ଯାଅ ତୁମେ ଦୁହେଁ କିଛି ସମୟ ପାଇଁ ସେ ଜାମୁକୋଳି ଗଛ ତଳେ ବସି ଖୁସି ଗପ କରିନିଅ ।

ସେ ଦୁଇଜଣଯାକ ଜାମୁକୋଳି ଗଛଆଡ଼କୁ ଆଗେଇଲେ ।

କଥା ହେଉ ହେଉ ସ୍ମାସିନ୍ ବହୁତ ଘାସ ଖୋଳି ସାରିଥିଲା । କିନ୍ତୁ ଶମଶାଦ୍‌ର ମନରେ ଅନେକ କଥା ଉଙ୍କି ମାରୁଥିଲା—ଶେଷକୁ ସେ ସ୍ମାସିନ୍‌କୁ ପଚାରିଦେଲା—ଜେଲରୁ ଆସି ଆମେ ଦୁହେଁ ଯିବା କୁଆଡ଼େ···ସ୍ମାସିନ୍ ଉତ୍ତର ଦେଲା "କୁଆଡ଼େ ହେଲେ ଚାଲିଯିବା—ଯଦି କେଉଁଠି ଯାଗା ନ ମିଳେ; ତେବେ ସଡ଼କର ଫୁଟପାଥ୍ ତ ଅଛି—ସେଇଠି ନିଜର ଆସ୍ଥାନ ବସାଇ ନେବା—କିନ୍ତୁ ନିଜର ଇଜ୍ଜତ ବିକିବା ନାହିଁ ।"

ଶମଶାଦ୍ ବଡ଼ ଉଦାସ କଣ୍ଠରେ କିଛି ସମୟ ରହିଲା ପରେ ମନକୁ ମନ କହିଲା—କେଜାଣେ ଏ ଦୁନିଆ କେବେ ବଦଳିବ ?

ସ୍ମାସିନ୍ ହସିକରି କହିଲା—ଆରେ ପାଗଳୀ ଏ ଦୁନିଆ କେବେ ବଦଳେନି ଆମକୁ ଏ ଦୁନିଆକୁ ବଦଳାଇବାକୁ ପଡ଼ିବ, ନୂଆ ଘାସ ଲଗାଇବାକୁ ହେଲେ ପୁରୁଣା ଘାସକୁ ଖୋଳି ଫୋପାଡ଼ି ଦେବାକୁ ପଡ଼େ । ଏହା କହି ସ୍ମାସିନ୍ ଆଉଗୋଟିଏ ବଡ଼ ଗୋଛାଏ ଘାସ କୋଦାଳରେ ଉଠାଇ ତାକୁ ଅତି ଘୃଣାରେ ପଛଆଡ଼କୁ ଫୋପାଡ଼ିଦେଲା ।



# ଚରିତ୍ରହୀନା : ହୀରା

ହୀରା ତା’ ବାପାଙ୍କ ସାଙ୍ଗରେ ଗାଉଲପିଣ୍ଡରୁ ଆସିଥିଲା । ଜୀବନର ପ୍ରଥମଥର-ପାଇଁ ମୁଁ କୌଣସି ଝିଅକୁ ‘ମେକ୍ଅପ’ରେ ଦେଖିଲି, ତାର ବୟସ ପାଖାପାଖି ଚଉଦ ପନ୍ଦର ବର୍ଷ ହେବ, ବର୍ତ୍ତମାନ ସେ କେବଳ ଝିଅଟି ଏପରି ଦେଖାଯାଉଥିଲା, ପୁରାପୁରି ସ୍ତ୍ରୀଲୋକଟିଏ ହୋଇ ନଥିଲା, ଲାଲି ଆଉ ଧଳା ରଙ୍ଗ, ଟଣାଟଣା ଆଖି, ମୁହଁରେ ପିଲାଳିଆମିର ଚିହ୍ନ ସ୍ପଷ୍ଟ ହୋଇ ଉଠୁଥିଲା, ଯାହାକି ପ୍ରାୟ ଦୁନିଆର ଏହି ବୟସର ସବୁ ସୁନ୍ଦର ପିଲାମାନଙ୍କ ମୁହଁରେ ଦେଖାଯାଏ ।

ଏସବୁ କଥା ମୁଁ ଆଜି ମୋର ବୟସର ଅଭିଜ୍ଞତାରୁ ବର୍ଣ୍ଣନାକରୁଛି । କିନ୍ତୁ ପ୍ରକୃତ କଥା ହେଲା, ଯେତେବେଳେ ପିଲାଦିନେ ମୁଁ ତାକୁ ଦେଖିଥିଲି ହୀରା ସେତେବେଳେ ମୋତେ ଦୁନିଆର ସବୁଠୁ ବଳି ସୁନ୍ଦରୀ ତରୁଣୀ ବୋଲି ମନେ-ହେଉଥିଲା । ମୁଁ ସେତେବେଳେ ବାପା ମାଆଙ୍କ କାନରେ ଫୁସ୍ ଫୁସ୍ କରି କହିବାର ଶୁଣିଥିଲି “ସହରକୁ ରଣ୍ଡି ଟାଏ ଆସିଛି” । ତେଣୁ ଆମେ ପିଲାମାନେ ‘ରଣ୍ଡି’ ଦେଖିବାକୁ ଉଚ୍ଛନ୍ନ ହୋଇପଡ଼ିଲୁ । ରଣ୍ଡି ଦେଖିବାକୁ କେମିତିଆ ଜନ୍ତୁ, ପକ୍ଷୀ ନା ପଶୁ ନାଁ ଆଉ କଣ ଏସବୁ ଆମ ପିଲାମାନଙ୍କର ଚର୍ଚ୍ଚାର ବିଷୟ ହୋଇ-ପଡ଼ିଲା । ଆମର ସେ ସମୟରେ ଏ ବିଷୟରେ ଧାରଣା ମଧ୍ୟ ନଥିଲା; କିନ୍ତୁ ଯେତେବେଳେ ମୋର ଏବଂ ଅନ୍ୟ ବନ୍ଧୁମାନଙ୍କର ବାପା ମାଆମାନେ ଆମଠୁ ଲୁଚାଇ ଏ ବିଷୟରେ ନାନାକଥା ଫୁସୁରୁ ଫୁସୁରୁ ହେଲେ ସେତେବେଳେ ଆମର କୌତୂହଳ ବଢ଼ିବାରେ ଲାଗିଲା । ଏସବୁ ଚୁପଚୁପ କଥା ଶୁଣି ଆମେ ଭାବିଲୁ ନିଶ୍ଚୟ ରଣ୍ଡି କୌଣସି ଦେଖିବାଭଳି ମହତ୍ତ୍ୱପୂର୍ଣ୍ଣ ଜନ୍ତୁଟିଏ ହୋଇଥିବ ଏବଂ ଏହାକୁ ଦେଖିବା ନିହାତି ଦରକାର ।

ମୁଁ ମହେନ୍ଦ୍ରକୁ କହିଲି ! “ସହରକୁ ରଣ୍ଡି ଆସିଛି । ମହେନ୍ଦ୍ର ସେତେବେଳକୁ ସେ ଗଛ ଉପରେ ଚଢ଼ି ସେଉ ଖାଉଥିଲା । ସେ ପଚାରିଲା କରେ ! “ରଣ୍ଡିମାନେ କ’ଣ ?” ସେ ଖାଇବା ସମୟରେ ଦୁଇ ଗୋଡ଼କୁ ତଳକୁ କରି ହଲାଉଥିଲା ଏବଂ ତାର ଏ ପ୍ରଶ୍ନ ଶୁଣି ମୁଁ ଉତ୍ତରଦେଲି ସେଇ ଝିଅ ଖାଲି ମେକ୍ଅପ କରେ ।”

ପୁଣି 'ମେକ୍‌ଅପ' ମାନେ କଣ ? ମହେନ୍ଦ୍ର ପଚାରିଲା । 'ମୁଁ ଜାଣେନା' । ମୁଁ ବିରକ୍ତ ହେଲି ।

ମହେନ୍ଦ୍ର ରାଗିଯାଇ କହିଲା ତୁ ଖାଲି ସବୁବେଳେ ମତେ ଏମିତିଆ କଥା କହୁ ଯାହାର ଅର୍ଥ ତୁ ନିଜେ ମଧ୍ୟ ଜାଣିନାହୁଁ, ମୁଁ ବିରକ୍ତ ହୋଇ ମହେନ୍ଦ୍ରର ଝୁଲୁଥିବା ଗୋଡ଼ ଦୁଇଟିକୁ ଟାଣିଦେଲି । ସେ ଗଛଉପରୁ ଦୁଲୁକିନା କଚଡ଼ା ହୋଇ ମୋର ଉପରେ ପଡ଼ିଲା । ଆମେ ଦୁହେଁ ନିଜ ଭିତରେ ଝଗଡ଼ାରେ ମାତିଗଲୁ ।

ସନ୍ଧ୍ୟାବେଳକୁ ଜଗବନ୍ଧୁ ଆସିଲା । ସେ ମହେନ୍ଦ୍ରର ଖାସ ବନ୍ଧୁ ଥିଲା । ସେ ଆମ ଦୁହିଁଙ୍କୁ ଅଲଗା ଅଲଗା ଡ଼ାକି କହିଲା "ସହରକୁ ଗଣ୍ଡି ଆସିଛି ।" ମହେନ୍ଦ୍ର ତାକୁ ଉତ୍ତରରେ କହିଲା ସେସବୁ ଆମେ ଜାଣିସାରିଛୁ । କିନ୍ତୁ ଗଣ୍ଡି କଣ, ସେ ଦେଖିବାକୁ କେମିତିଆ ? ଜଗବନ୍ଧୁ ଅନ୍ଦାଜ ଲଗାଇ କହିଲା ମୋ ଖେଆଲରେ ସେ ଦେଖିବାକୁ ନିଶ୍ଚୟ ପାତିମାଙ୍କଡ଼ ଭଳି । ମା' କହୁଥିଲା ତା' ଓଠ ଏକଦମ ଲାଲ, ଆଖି ଦୁଇଟା ବଡ଼ ବଡ଼, ସେ ବର୍ଚ୍ଛିଆ ନାଚେ ଏବଂ ମାଙ୍କଡ଼ଛଡ଼ା ଏମିତି କିଏ ହୋଇପାରେ ?

ମୁଁ କହିଲି "ମୋ ଖେଆଲରେ ଗଣ୍ଡି ଦେଖିବାକୁ ନିଶ୍ଚୟ ଭାଲୁପରି ହୋଇଥିବ । ମୋ ମା', ତୁମ ମା' ଏବଂ ହମିଦ୍‌ର ମା'କୁ କହିବାର ଶୁଣିଛି ଯେ ଯଦି କେହି ସେ ଗଣ୍ଡିର ପଞ୍ଝା ଭିତରେ ଥରେ ଢ଼ୁକିଗଲା ତେବେ ସେ ଭିତରୁ ବାହାରିବା ମୁସ୍କିଲ ହୋଇପଡ଼େ ଏବଂ ଏଇମିତିଆ ପଞ୍ଝା କେବଳ ଭାଲୁଛଡ଼ା ଆଉ କାହାର ହୋଇପାରେ ? ଆଉ ମଧ୍ୟ ଅବଦୁଲ ଶିକାରୀ ମତେ ସେଦିନ ଭାଲୁର ପଞ୍ଝା ବିଷୟରେ ଏହି କଥା ହିଁ କହୁଥିଲା । ମୋ କଥାକୁ ମୁଁ ଜୋର୍‌ଦେଇ କହିଲି ।

ବହୁ ସମୟ ପର୍ଯ୍ୟନ୍ତ ଆମେସବୁ ଏ ଗଣ୍ଡି ବିଷୟରେ ଯୁକ୍ତିତର୍କ କଲୁ । ଆମର ଏମିତି ଯୁକ୍ତିତର୍କ ଚାଲିଥିଲାବେଳେ ଜଗବନ୍ଧୁର ବନ୍ଧୁ ଛୁଟିଆସିଲା, ସେ ଆମକୁ କହିଲା "ହସ୍‌ପିଟାଲର ଦକ୍ଷିଣ ପଟରେ ଯେଉଁ ନଳା ବୋହିଯାଉଛି ସେଥିରୁ ମୋତି ମିଳୁଛି । ଆମେସବୁ କଥାବାର୍ତ୍ତା ସେତିକିରେ ବନ୍ଦ କରି ମୋତି ଖୋଜିବା ପାଇଁ ବାହାରିପଡ଼ିଲୁ ଏବଂ ବହୁତ ରାତିପର୍ଯ୍ୟନ୍ତ ଖୋଜାଖୋଜି କରି ସୁନ୍ଦର ସୁନ୍ଦର ଶାମୁକାସବୁ ଘରକୁ ଆଣିଲୁ ।

ତା'ପରଦିନ ସକାଳୁ ସକାଳୁ ମୁଁ ଘରୁ ବାହାରି ଯାଇ ହସପିଟାଲ ବଗିଚାର ତଳପଟକୁ ଥିବା ମନ୍ଦାର ଗଛ ବୁଦାର ଆଢ଼ୁଆଳରେ ଲୁଚିଗଲି, କାରଣ ତା'ପୂର୍ବଦିନ ରାତିରେ ବାପା ମାଆଙ୍କୁ କହୁଥିଲେ, ଆଜି ଗଣ୍ଡି ହସପିଟାଲ ଆସିବ ।

ଏକଥା ଶୁଣି ମାଆ ବାପାଙ୍କୁ କଣ କହିଲେ ମୁଁ ଶୁଣିପାରିଲିନି ଏବଂ ସିଦ୍ଧାନ୍ତ କରିନେଲି ଯେ ମୁଁ ନିଶ୍ଚୟ ହସପିଟାଲ ଯାଇ ରାଣ୍ଡିକୁ ଦେଖିବି ।

ହସପିଟାଲର ଚାରିପଟ ଏକ ବିରାଟ ବଗିଚା ଦ୍ୱାରା ଘେରା ଯାଇଥିଲା । ହସପିଟାଲର ପଛପଟରେ ଗୋଟିଏ ଛୋଟିଆ ପାହାଡ଼ ଯାହାକି ବଗିଚାର ଶୋଭାକୁ ଆହୁରି ବଢ଼ାଇ ଦେଇଥିଲା । ହସପିଟାଲର ପଥର ଚଟାଣ ଉପରେ ନିର୍ମାଣ କରାଯାଇଥିଲା ଏବଂ ଯେଉଁ ଯାଗାରେ ମୁଁ ଲୁଚିବସିଥିଲି ସେହି ଯାଗାରୁ ବାପାଙ୍କୁ ପୂର୍ଣ୍ଣଭାବେ ଦେଖି ହେଉଥିଲା । ବାପା ହସପିଟାଲର ସାମନା ପଟରେ ଥିବା ଏକ ଖମ୍ବ ନିକଟରେ ନିଜର ଚେୟାର ଟେବୁଲ ପକାଇ ବସୁଥିଲେ ଏବଂ ରୋଗୀମାନେ ନାଁଆର ଠିକଣା ଇତ୍ୟାଦି ଲେଖୁଥିଲେ । ବାପାଙ୍କ ସାମନାରେ ଏକ ସୁନ୍ଦର ପଥରର ସିଡ଼ି ଉପର ମହଲାକୁ ଚାଲିଯାଇଥିଲା ଏବଂ ସାମନାରେ ଲମ୍ବି ଯାଇଥିବା ରାସ୍ତାରେ ଅନେକ ରଙ୍ଗ ବେରଙ୍ଗୀ ବଦଳ ସବୁ ବିଛା ଯାଇଥିଲା ଯାହାକି ହସପିଟାଲର ମୁଖ୍ୟ ଫାଟକ ପର୍ଯ୍ୟନ୍ତ ଲମ୍ବି ଯାଇଥିଲା । ଏହି ରାସ୍ତା ଯାଇ ଗେଟର ଆରପଟରେ ଆଉ ଗୋଟେ ବଡ଼ ରାସ୍ତାରେ ମିଶୁଥିଲା ଯାହାକି ସୈନ୍ୟମାନଙ୍କର ପ୍ୟାରେଡ଼ ଗ୍ରାଉଣ୍ଡକୁ ଯାଉଥିଲା । ବାପାଙ୍କ ଚେୟାରରେ ବସିଲେ ଆଖି ଦୁଇଟା ପୂରା ସାମନା ଗେଟ୍ ପର୍ଯ୍ୟନ୍ତ ଲମ୍ବି ଯାଉଥିଲା । ଆଉ ସେଇ ସାମନା ରାସ୍ତାର ଦୁଇ ପାଖରେ ନାନାରଙ୍ଗର ଫୁଲଗଛ ସବୁ ଧାଡ଼ିଧାଡ଼ି ହୋଇ ଲଗାଯାଇଥିଲା । ବସନ୍ତ ଋତୁରେ ଏହି ଗଛମାନେ ଫୁଲରେ ଭର୍ତ୍ତି ପଡ଼ୁଥିଲେ ଏବଂ ଫୁଲ ତୋଳିବା ପାଇଁ ସହରର ପିଲାମାନଙ୍କ ମଧ୍ୟରେ ରୀତିମତ ଝଗଡ଼ା ଲାଗିଯାଉଥିଲା ।

ମୋତେ ପ୍ରକୃତରେ ହଳଦିଆ ରଙ୍ଗର ଗୋଲାପ ଖୁବ୍ ଭଲଲାଗେ ଏବଂ ଏ ସଉକ ମୋର ଖୁବ୍ ପିଲାଦିନର । ହସପିଟାଲର ପଶ୍ଚିମ କୋଣରେ ଥିବା ଗୋଲ ମାର୍ବଲ ପଥରର ଖମ୍ବର ଚାରିପାଖରେ ଏହି ହଳଦିଆ ଗୋଲାପର ସୁଗନ୍ଧରେ ଆମେ-ସବୁ ଆମୋଦିତ ହେଉଥିଲୁ । ମୋ ବାପାଙ୍କୁ ମଧ୍ୟ ଏହି ଗୋଲାପ ବହୁତ ଭଲ ଲାଗୁଥିଲା ଏବଂ ବୋଧହୁଏ ଏଇଥିପାଇଁ ସେ ଏକ ପ୍ରକାରର ଲଟା ଗୋଲାପକୁ ନିଜ ବସିଥିବା ସ୍ଥାନର ଖୁବ୍ ନିକଟରେ ଲଗାଇଥିଲେ ।

ମୋ ଲୁଚିଥିବା ଜାଗାରୁ ସିଧା ନିରୀକ୍ଷଣ କଲେ ରୋଗୀମାନେ ହସ୍ପିଟାଲ ଯାଉଥିବା ଏବଂ ଆସୁଥିବାର ଦୃଶ୍ୟ ପରିଲକ୍ଷିତ ହେଉଥିଲା । ଡାକ୍ତରବାବୁ ଏହି ଖମ୍ବ ପାଖରେ ଥିବା ଚୌକିରେ ବସୁଥିଲେ ଏବଂ ତାଙ୍କ ଚାରିପାଖରେ ରୋଗୀମାନଙ୍କର ଲମ୍ବା ଧାଡ଼ି ଲାଗୁଥିଲା । ଏମାନଙ୍କ ମଧ୍ୟରେ ପୁରୁଷ, ସ୍ତ୍ରୀ, ଛୋଟପିଲା ଆଦି ହରେକ କିସମର ରୋଗୀ ଥିଲେ । ସେମାନଙ୍କ ମଧ୍ୟରେ କେତେକ ନିଜର ପୋଷା କୁକୁରକୁ ସାଙ୍ଗରେ ଆଣିଥିଲେ କିନ୍ତୁ କେହି ନିଜର ରାଣ୍ଡିକୁ ସାଙ୍ଗରେ ଆଣିନଥିଲେ ।

ବୋଧହୁଏ ଆଜି ଘଣ୍ଟି ଆସିବ ନାହିଁ, ଏତେ ସମସ୍ତ ମୋର ଗୁଚ୍ଛାଟାରେ ଗଲା, ମୁଁ ମନେ ମନେ ବିରକ୍ତ ହେଲି । ନିଜକୁ ନିଜେ ଧିକ୍କାର କଲି ଏବଂ ଏତେ ସମସ୍ତ ଧରି ଲୁଚିରହିବା ମୋ ପକ୍ଷରେ ଆଦୌ ଉଚିତ ହୋଇ ନାହିଁ ବୋଲି ଭାବିନେଲି । ଏଣୁ ମୁଁ ସିଦ୍ଧାନ୍ତକଲି ଯେତେଶୀଘ୍ର ଏ ସ୍ଥାନ ପରିତ୍ୟାଗ କରିଯାଇପାରେ ସେତେ ମୋ ପକ୍ଷରେ ମଙ୍ଗଳକର ହେବ ।

ମୁଁ ବିରକ୍ତ ହୋଇ ସେ ସ୍ଥାନ ପରିତ୍ୟାଗ କରିବାକୁ ପ୍ରସ୍ତୁତ ହେଉଥିଲି-ବେଳେ ଦେଖିଲି ଗୋଟିଏ ଚଉଦ ପନ୍ଦର ବର୍ଷର ସୁନ୍ଦର ଝିଅଟିଏ ଏକ ଦରବୁଢ଼ା ଲୋକ ସାଙ୍ଗରେ ହସପିଟାଲ ଭିତରକୁ ପ୍ରବେଶକଲା । ସେଇ ଝିଅଟି ଧଳା ରଙ୍ଗର ସାଲୱାର ପିନ୍ଧିଥିଲା ଏବଂ ହାଇହିଲ ଯୋତା ପିନ୍ଧିଥିଲା ଏବଂ ଖୁବ୍ କ୍ଷିପ୍ର ଗତିରେ ଚାଲୁଥିଲା—ତାର ଚୁଲିତକ ଜଣାପଡ଼ୁଥିଲା ସତେଯେପରି ସେ ଦଉଡ଼ୁଥିଲା—ସେ ଯେଉଁ କମିଜ ପିନ୍ଧିଥିଲା ସେଥିରେ ବିଭିନ୍ନ ରଙ୍ଗର ଫୁଲସବୁ ଶୋଭା ପାଉଥିଲେ ଏବଂ ସେଇ କମିଜ ଉପରେ ଓଢ଼ଣୀଟିଏ ମଧ୍ୟ ଥିଲା । ତାର ଚୁଲି ସାଙ୍ଗରେ ସେ କାନରେ ପିନ୍ଧିଥିବା ସୁନାର ଫୁଲ ଦୁଇଟି ମଧ୍ୟ ଦୋହଲୁଥିଲେ । ଦେଖିବାକୁ ଗଲେ ମୋ ଆଖି ଦୁଇଟା ଏତେ ସୁନ୍ଦର ଝିଅଟିଏ କେବେ ଦେଖି ନଥିଲା । ମୋ ବାପା ସେମାନଙ୍କୁ ବସିବାପାଇଁ କହିଲେ । ଡାକ୍ତରଖାନାରେ ସେତେବେଳକୁ ବହୁତ ଭିଡ଼ ଜମିଥିଲା ଏବଂ ଡାକ୍ତର ସାହେବଙ୍କ ପାଖରେ ରୋଗୀମାନଙ୍କର ଲମ୍ବା କ୍ୟୁ ଲାଗିଥିଲା । ଏହି ସମୟରେ ସେ ଝିଅଟିର ସାଥୀରେ ଆସିଥିବା ଲୋକଟି ଝିଅଟିକୁ ଧୀରେ କଣ କହିଲା ଏବଂ ଝିଅଟି ତତ୍‌କ୍ଷଣାତ୍ ବୁଲିପଡ଼ି ନାଚ ନାଚ ବଗିଚା ଆଡ଼କୁ ଆସିଲା ଏବଂ ହଠାତ୍ ତା ନଜର ମୁଁ ଲୁଚିଥିବା ଜାଗାରେ ହିଁ ପଡ଼ିଗଲା । ସେ ଧିରେ ଆସି ବଗିଚାର ସେହି ଖମ୍ବ ପାଖରେ ଠିଆହେଲା ଯେଉଁଠାରେ ମୁଁ ଲୁଚିଥିଲି । ବାପା ସେହି ସମୟରେ ସେଇ ଦରବୁଢ଼ା ଲୋକଟିକୁ ଖଟ ଉପରେ ଶୁଆଇ ଦେଇ 'ଷ୍ଟେଥୋ' ସାହାଯ୍ୟରେ କଣ ସବୁ ପରୀକ୍ଷା ଚଳାଉଥିଲେ ।

ଝିଅଟି ଡେଇଁପଡ଼ି ସେଇ ଲଟେଇଥିବା ହଳଦିଆ ଗୋଲାପରୁ କିଛି ତୋଳୁ ତୋଳୁ ଲକ୍ଷ୍ୟକଲା ଯେ ମୁଁ ତଳେ ବସିଛୁ, ସେ ହଠାତ୍ ଆଶ୍ଚର୍ଯ୍ୟ ହୋଇଗଲା ।

ତମେ ଏଠି ଏମିତି କାହିଁକି ଲୁଚି ବସିଛ ?

ମୁଁ ତାକୁ ଚୁପ ରହିବାକୁ ଇଶାରା ଦେଲି ।

କହିଲି ଆଜି ହସପିଟାଲକୁ କିଏ ଜଣେ ଆସିବାର ଅଛୁ—ତାକୁ ମୁଁ ଦେଖିବାପାଇଁ ଲୁଚିବସିଛୁ ଯଦି ତୁମେ ଚାହଁ ତେବେ ଏଇଠି ଲୁଚିଯାଅ । ସେ କଣ

ବୁଝିଲା କେଜାଣି ମୋ ପାଖରେ ଲାଗିଯାଇ ବସିପଡ଼ିଲା ଏବଂ ମୋତେ ପଚାରିଲା କାହିଁକି, କଏ ଆସୁଛି କି ?

ଜଣେ ପରୀ, ମୁଁ କହିଲି ।

ମୋ ମୁହଁରୁ ପରୀ ଶବ୍ଦ ଶୁଣି ସେ ଆଶ୍ଚର୍ଯ୍ୟ ହୋଇଗଲା ଏବଂ ହସିପକାଇ କହିଲା, ତମେ କଣ ଆଜି ପର୍ଯ୍ୟନ୍ତ ପରୀ ଦେଖିନାହଁ... ?

ମୁଁ ମୁଣ୍ଡ ହଲାଇଲି । ତାକୁ ପଚାରିଲି ତମେ ଦେଖିଛ ?

ସେ ମୁଣ୍ଡ ହଲାଇଲା । ମୁଁ ତାକୁ କହିଲି ଠିକ୍ଅଛି ତମେ ମୋ ସାଙ୍ଗରେ କିଛି ସମୟ ଏହି ସ୍ଥାନରେ ଲୁଚିବସ, ଆଉ କିଛି ସମୟପରେ ପରୀଟିଏ ହସପିଟାଲକୁ ଆସିବ । ମୋ ବାପାଙ୍କ ପାଖକୁ ଆସିବ । କାଲି ମୋ କଥା ବାପା ମାଆ ଚୁପଚାପ କଥା ହେଉଥିବା ସମୟରେ ଲୁଚିଲୁଚି ଶୁଣିଛି, ମୁଁ ଏକାଥରକେ କହିପକାଇଲି ।

ମୋ କଥା ଶୁଣି ସେ ଆହୁରି ଜୋରରେ ହସିବାକୁ ଲାଗିଲା ।

ମୁଁ ତାକୁ ଏତେ ଜୋରରେ ହସିବାର କାରଣ ପଚାରିଲି ।

ସେ ହସି ହସି କହିଲା ମୁଁ ସେଇ ପରୀ, ଯାହାକୁ ଦେଖିବା ପାଇଁ ତମେ ଏତେ ସମୟ ଲୁଚି ବସିଛ ।

ତମେ ସେଇ ପରୀ ! ମୁଁ ଆଶ୍ଚର୍ଯ୍ୟର ସହିତ ତାକୁ ଏକ ଲୟରେ ଚାହିଁ-ରହିଲି । କିନ୍ତୁ ତମେ ତ ଜଣେ ଝିଅ ପିଲା ।

ଝିଅମାନଙ୍କୁ ପରୀ କୁହାଯାଏ—ସେ ହସି ହସି ମୋ କଥାର ଉତ୍ତରଦେଲା ଏବଂ ଗୋଲାପର ପାଖୁଡ଼ାକୁ ଛିଣ୍ଡାଇ ମୋ ଉପରେ ଫୋପାଡ଼ିଲା ।

ସେ ବହୁତ ସୁନ୍ଦର ଥିଲା ଆଉ ତା' ଆଖିର ଚେହେରା ମତେ ବିମୋହିତ କରୁଥିଲା—ସେ ସୁନ୍ଦର ଫ୍ରକ୍‌ଟିଏପରି ଦେଖାଯାଉଥିଲା ଯାହାକୁ ନେଇ କେବଳ ଏ ବଗିଚାରେ ଲୁଚକାଳି ଖେଳ ଖେଳ ହୁଅନ୍ତି । ପରୀର ପଣତପ୍ୟ ସତରେ ମତେ ଦୋହଲାଇ ଦେଇଥିଲା ।

ମୁଁ ସତରେ ଖୁବ ଖୁସି ଥିଲି ।

ଆଚ୍ଛା ! ତାହେଲେ ସୁନ୍ଦର ସୁନ୍ଦର ଝିଅମାନଙ୍କୁ ପରୀ କୁହନ୍ତି ନୁହେଁ ? ତମ ସହରରେ କଣ ପରୀ ନାହାନ୍ତି କି ? ସେ ମତେ ଓଲଟା ପ୍ରଶ୍ନକଲା । ମୁଁ ଉତ୍ତରରେ କହିଲି, "ନାହାନ୍ତି କାହିଁକି; ହେଲେ ତୁମପରି ନୁହନ୍ତି ? କାରଣ ବର୍ତ୍ତମାନ ମୁଁ ବୁଝିଯାଇଥିଲି, ପରୀର ଅର୍ଥ କଣ, ଏଣୁ ମୁଁ ମନେପକାଇ ଆମ ସହରରେ ଏମିତିଆ ପରୀ କେତେଜଣ ଅଛନ୍ତି ମୋ ଆଙ୍ଗୁଠିରେ ଗଣିବାକୁ ଲାଗିଲି ।

ମୋର ଜଣେ ଭଉଣୀ ଘଣ୍ଟି ଅଛୁ ।

ତୁମର ଭଉଣୀ ? ସେ ଖୁବ ଜୋରରେ ହସିବାକୁ ଲାଗିଲା "ଅବଶ୍ୟ ସେ ତୁମପରି ନୁହେଁ । କିନ୍ତୁ ତମଠୁ କୌଣସି ଗୁଣରେ କମ ନୁହେଁ । ମୋର ବନ୍ଧୁ ହମିଦର ଭଉଣୀ ମଧ୍ୟ ଗୋଟିଏ ଘଣ୍ଟି; ହେଲେ ତମପରି ଏତେ ଘଣ୍ଟି ନୁହେଁ । ଆଜ ଗୁରୁବଚନର ଭଉଣୀ ମଧ୍ୟ; କିନ୍ତୁ ଗୁରୁବଚନର ମା ନୁହେଁ ।"

ହଉ ଆଉ, ବନ୍ଦକର । ତମେ ସତରେ ଏକଦମ ବୁଦ୍ଧୁ । ସେ ହସି ହସି ବଗିଚ୍ଚାରେ ଉଡ଼ୁଥିବା ଗୋଟିଏ ରଙ୍ଗୀନ ପ୍ରଜାପତି ପଛରେ ଧାଇଁବାକୁ ଲାଗିଲା ଏବଂ ମତେ ମଧ୍ୟ ତା' ପଛରେ ଗୋଡ଼ାଇ ଗୋଡ଼ାଇ ପ୍ରଜାପତିକୁ ଧରିବାପାଇଁ ଅନୁରୋଧ କଲା । ମୁଁ କିଛି ନ ବୁଝି ତା ପଛରେ ପ୍ରଜାପତିକୁ ଧରିବାକୁ ଦଉଡ଼ିବାରେ ଲାଗିଲି । ଦଉଡ଼ିବା ମଝିରେ ସେ କହିଲା, ସତରେ ଏ ପ୍ରଜାପତିଟା କେତେ ସୁନ୍ଦର । ମୋ ପାଟିରୁ ତତ୍‌କ୍ଷଣାତ୍ ବାହାରିପଡ଼ିଲା, ବିଲ୍‌କୁଲ ଘଣ୍ଟିଟିଏ ପରି ।"

ପ୍ରଜାପତି ପଛରେ ଗୋଡ଼ାଇ ଗୋଡ଼ାଇ ଆମେ ଦୁହେଁ ବହୁତ ବାଟ ଗ୍ଲଲିଯାଇଥିଲୁ । ସେ ମୋ ପଛରେ ଲୁଚି ଲୁଚି ପରି ଦୌଡ଼ୁଥିଲା ଏବଂ ନିଜେ ପୁରାପୁରି ଭୁଲିଯାଇଥିଲା ଯେ ସେ କିଏ ଏବଂ କାହିଁକି ଏଠାକୁ ଆସିଥିଲା । ଆମେ ଦୁହେଁ ଦୌଡ଼ି ଦୌଡ଼ି ହସପିଟାଲର ଅନ୍ୟ ପଟକୁ ଗ୍ଲଲିଯାଇଥିଲୁ ।

ବହୁତସମୟପରେ ତାର ବାପା ଏବଂ ହସପିଟାଲର ଅନ୍ୟ କେତେ କର୍ମଚ୍ଚାରୀମାନେ ଆମ ଦୁହିଁଙ୍କୁ ଗୋଟିଏ ଫଳନ୍ତ ଗଛ ଉପରେ ବସିଥିବାର ଦେଖିଲେ । ମୁଁ ତାକୁ ଜାଣିର ସେଉ ଫଳଥିବା ଗୋଟିଏ ଗଛ ଦେଖାଇଥିଲି ଏବଂ ସେ ସେଇ ଗଛ ଉପରକୁ ଚଢ଼ୁଥିବା ସମୟରେ ତାର ପାଇଜାମାର କିଛି ଅଂଶ ଫାଟିଯାଇଥିଲା । ଦୌଡ଼ି ଦୌଡ଼ି ତାର ଓଠର ଲିପଷ୍ଟିକ୍ ଝାଳରେ ଧୋଇ-ହୋଇ ଯାଇଥିଲା ଏବଂ କପାଳର କୁଙ୍କୁମ ଅସ୍ପଷ୍ଟ ହୋଇ ଯାଇଥିଲା । ତା' ମୁଣ୍ଡର ବାଳସବୁ ଅଡ଼ୁଆ ହୋଇ ଯାଇଥିଲା । କିନ୍ତୁ ତଥାପି ତା ହସରୁ ମୁକ୍ତା ଝରୁଥିଲା । ସେ ମୋ ସାଙ୍ଗରେ ରାଉଲପିଣ୍ଡିର କଥାସବୁ କହୁଥିଲା ଯେଉଁଠାରୁ ସେ ଆସିଥିଲା । ସେ ରାଉଲପିଣ୍ଡିରେ ତା ଘରକୁ ମତେ ଯିବାପାଇଁ ନିମନ୍ତ୍ରଣ ଜଣାଇଥିଲା । ତା ନାଁ ସ୍ୱର୍ଗ ଥିଲା, ତା ମାଆଙ୍କ ନାଁ ମୋତି ଥିଲା ଏବଂ ଭଉଣୀର ନାଁ ମାଲମ ଥିଲା ଏବଂ ତା' ବଂଶର ସମସ୍ତଙ୍କ ନାଁ କୌଣସି ନାଁ କୌଣସି ଦାମୀ ପଥରର ନାଁ ସହିତ ଯୋଡ଼ା ହୋଇଥିଲା । ଆମପରି ସାଧାରଣ ନାଁ ନଥିଲା ।

ସ୍ୱର୍ଗର ବାପା ଆସି ତାକୁ ଗଛରୁ ଟେକି ଓହ୍ଲାଇଦେଲେ ଏବଂ ଘରକୁ ନେଇଗଲେ । ଘରେ ଯେତେବେଳେ ମା' ଜାଣିଲେ ଯେ ମୁଁ ହିନସାର ଏକ ଘଣ୍ଟି

ସହିତ ଖେଳିଥିଲି, ସେ ମୋତେ ଖୁବ୍ ପିଟିଲେ ଏବଂ ସେତେବେଳେ ମୁଁ ବୁଝିପାରିଥିଲି ଯେ ରାଣି ସାଙ୍ଗେ ଖେଳି ମୁଁ କି ଅପରାଧ କରିଥିଲି ।

ଏହି ଘଟଣାର କିଛିଦିନ ପରେ ସ୍ୱାରୀ ଏବଂ ତାର ବାପାଙ୍କୁ ଦେଶାନ୍ତର କରି ଦିଆଗଲା । ତାର ବାପା ନିହାତି ମୂର୍ଖ ଥିଲା । କାରଣ ଯେଉଁ ସହରରେ କେହି ନର୍ତ୍ତକୀ ନ ଥିଲେ ସେହି ସହରକୁ ସେ ପ୍ରକୃତରେ ତାର ଝିଅକୁ ରାଜାଙ୍କ ଉଆସରେ ନର୍ତ୍ତକୀ ରୂପେ ରଖିବାପାଇଁ ଆଣିଥିଲା କିନ୍ତୁ ରାଜାଙ୍କ ନିକଟରେ ପେଶ୍ କରିବାକୁ ଯେଉଁ ଉପାୟ ଗ୍ରହଣ କରିବା ଦରକାର ତାହା ତାକୁ ଜଣା ନଥିଲା ଫଳରେ ତାର ଅନୁରୋଧକୁ କେହି ଗ୍ରହଣକଲେ ନାହିଁ । ଯଦିଓ ସେ ଖୁବ ସୁନ୍ଦର ଝିଅଟିଏ ଥିଲା; କିନ୍ତୁ ସୁନ୍ଦର ଝିଅଟିକୁ ବିକିବାପାଇଁ ଯେଉଁ ରାସ୍ତା ତାର ବାପା ବାଛିନେଇଥିଲା, ସେଇ ରାସ୍ତା କାହାର ଗ୍ରହଣ ଯୋଗ୍ୟ ହେଲା ନାହିଁ, ଅର୍ଥାତ ନର୍ତ୍ତକୀ ସ୍ୱାରୀକୁ ଗ୍ରହଣ କରିବାକୁ ରାଜିହେଲେ ନାହିଁ । ରାଜା ତାକୁ ଗ୍ରହଣକଲେ ନାହିଁ, ତା' ଛଡ଼ା ରାଜାଙ୍କର ମନ୍ତ୍ରୀ, ସୁବେଦାର ଏବଂ ରାଜ୍ୟର ଅନେକ ବଡ଼ ବଡ଼ ଅଫିସରମାନେ ମଧ୍ୟ ସ୍ୱାରୀକୁ ଗ୍ରହଣକରିବାକୁ ମନାକରିଦେଲେ । ବିଚାରୀ ନର୍ତ୍ତକୀକୁ କେହି ତାର ରୂପ ଓ ଗୁଣରେ ପ୍ରଶଂସା କରି ଗ୍ରହଣକରିବାକୁ ରାଜିହେଲେ ନାହିଁ । କେହି ତାକୁ ନିଜର କରିବା ପାଇଁ ଆଗେଇ ଆସିଲେ ନାହିଁ ।

ଫଳରେ ବାପ ଝିଅ ଏ ଘର ସେ ଘର ହୋଇ ନାନା ନିନ୍ଦା ଏବଂ ଅପମାନ ସହ୍ୟକଲେ । ଏ ଅପମାନ ସେମାନଙ୍କର ଦିନକୁ ଦିନ ବଢ଼ିବାରେ ଲାଗିଲା । ରାଜା ତାଙ୍କୁ ସେମାନଙ୍କର ବଦ୍‌ଚଳଣି ଯୋଗୁଁ ବହୁତ କାଳ ଯାଏ ସମାଜ ବାଛନ୍ଦ କରିଦେଲେ । ବିଚରା ବାପ ଝିଅଙ୍କ ଅବସ୍ଥା ଆହୁରି ଉତ୍କଟ ହୋଇଗଲା । ସେମାନଙ୍କୁ କିଛିଦିନ ପରେ ଦେଶ ଛାଡ଼ିବାକୁ ପଡ଼ିଲା । ସ୍ୱାରୀର ବାପା ପୁରୁଣା କାଳର ଲୋକ ହୋଇଥିବାରୁ ସେ ଏସବୁ ଦେଖି ଗଭୀର ମନସ୍ତାପ କଲା । ଝିଅକୁ ନାଚିବା ଗାଇବା ଇତ୍ୟାଦି ଶିଖାଇଥିବାରୁ ତାକୁ ଆଜି ଏତେ କଷ୍ଟ ଭୋଗିବାକୁ ପଡ଼ିଲା, ଯେଉଁଥିପାଇଁ କି ଝିଅକୁ କେହି ଗ୍ରହଣ କରିବାପାଇଁ ରାଜିହେଲେ ନାହିଁ । ସେ ଯଦି ଝିଅକୁ ରାଣି (ନର୍ତ୍ତକୀ) ହିସାବରେ ପରିଚୟ କରାଇ ନଥାନ୍ତା, ତେବେ ହୁଏତ ସମସ୍ତେ ତା ସୁନ୍ଦର ଝିଅକୁ ଗ୍ରହଣ କରି ନେଇଥାନ୍ତେ । କିନ୍ତୁ ତାକୁ ଏସବୁ ଜମା ମାଲୁମ ନଥିଲା—ଏଣୁ ତା ଝିଅଟିକୁ ସମସ୍ତେ ହତାଦର ହିଁ କଲେ । ତା ଝିଅର ଚରିତ୍ରକୁ ସମସ୍ତେ ସନ୍ଦେହ ଦୃଷ୍ଟିରେ ଦେଖିଲେ । ସମସ୍ତେ ଅଣ୍ଟାରେ ତାକୁ କହିଲେ ତୁମେ ତୁମର ଝିଅକୁ କୌଣସି ସିନେମାରେ ପୁରାଇଦିଅ ତାର ଖୁବ ନାଁ ହେବ । ଏସବୁ କଥା ଶୁଣି ସ୍ୱାରୀର ଆଖି ଲୁହ ଛଳ ଛଳ ହୋଇଗଲା । ସେ ଚିନ୍ତା କରିପାରୁ ନଥିଲା । ଦୁନିଆରେ ସତ୍ୟର ମୂଲ୍ୟ କଣ ତା'ହେଲେ ଏଇଥି ? ଦୁନିଆରେ

ନର୍ତ୍ତକୀ ହେବାଟା କଣ ଏକ ଅପରାଧ ? ବୋଧହୁଏ ଏକ ନର୍ତ୍ତକ ସତ୍ୟକୁ କେହି ଆଜି ଜାଣିବା ଦୁନିଆରେ ଗ୍ରହଣ କରିବେ ନାହିଁ । ସବୁ ପ୍ରକାର ଗାଳି, ନିନ୍ଦା ଅପମାନ ସହି ସ୍ୱୀର ଏବଂ ତାର ମୂର୍ଖ ବାପ ଅନୁଭବ କଲେ ଏ ଦୁନିଆଟା କେବଳ ମିଛ ମାୟାରେ ପରିପୂର୍ଣ୍ଣ । ଏଠି ସତ କହିବା ହିଁ ପାପ ।

ଏହାର କିଛି ଦିନ ପରେ ସେମାନେ ଦେଶ ଛାଡ଼ି ଚାଲିଗଲେ । ହୁଏତ ସ୍ୱା ଭିତରେ ସେମାନେ ସତକୁ ଲୁଚାଇ ମିଛକଥା କହି ଶିଖିଥିବେ କାରଣ ମଣିଷ ଠିକଲେ ଶିଖେ । କିନ୍ତୁ ମୋ ହୃଦୟରେ ସ୍ୱୀର ବାଭିର ଏକ ପ୍ରତିଛବି ଅନେକ ଦିନ ଧରି ରହିଗଲା । ଯିଏ କେବଳ ଛୋଟିଆ ଝିଅଟିଏ ପରି ରଙ୍ଗିନ ପ୍ରଜାପତି ପଛରେ ଗୋଡ଼ାଉଥିଲା ।



# କେବଳ ଗୋଟିଏ କାମ

ମୋ ପାଖରେ କାର ନାହିଁ ଏବଂ ନିକଟରେ ମଧ୍ୟ ମୋର କାର ଆସିବାର ସମ୍ଭାବନା ନାହିଁ । ଏପରି ଅବସ୍ଥାରେ ମୁଁ କେବଳ ଗୋଟିଏ କାମ କରିପାରେ ଏବଂ ସେ କାମଟି ହେଲା କାର ଉପରେ ରିସର୍ଚ୍ଚ କରିବା ଏବଂ ପ୍ରାୟ ଦେଖାଯାଇଛି ଯେ ଯାହା ପାଖରେ ଯେଉଁ ଜିନିଷର ଅଭାବ, ସେ ସେହି ଜିନିଷଟାକୁ ହିଁ ବେଶି ଖୋଜେ ଏବଂ ତାରି ଉପରେ ଅନୁସନ୍ଧାନ କରେ । ଆପଣମାନେ ଦେଖିଥିବେ ଯେ ଯେଉଁମାନେ ଜୀବନରେ କେବେ ଗପ ଲେଖନ୍ତି ନାହିଁ, ସେମାନେ ଗପ ଉପରେ ବେଶି ପ୍ରବନ୍ଧ ଲେଖନ୍ତି ଏବଂ ସେମାନଙ୍କୁ କଳାର ପଣ୍ଡିତ ବୋଲି କୁହାଯାଏ । ଯେଉଁ ଲୋକମାନଙ୍କ ଜୀବନରେ କୌଣସି ସୌନ୍ଦର୍ଯ୍ୟବୋଧ ନାହିଁ ସେମାନଙ୍କୁ ଅନୁପମ କଳାର ଅଧିକାରୀ ବୋଲି କୁହାଯାଏ । ଆଜି ଯେଉଁ ଲୋକଙ୍କ ଦ୍ୱାରା କିଛି କାର୍ଯ୍ୟ ହେଲା ନାହିଁ, ସେମାନେ ହିଁ ମନ୍ତ୍ରୀ ରୂପେ ଗଣ୍ୟ ହେଉଛନ୍ତି କାରଣ ସେମାନେ ଦୁନିଆର ସବୁ ବିଷୟରେ ଭାଷଣ ଦିଅନ୍ତି । ଜୀବନରେ ସଫଳତା ପାଇବା ପାଇଁ ଆଉ ଗୋଟିଏ ରାସ୍ତା ହେଲା ଯେ ଯେଉଁ କାମ ଆପଣଙ୍କୁ ଆସୁ ନ ଥିବ, ସେଇ କାମ କରିବା ପାଇଁ ଆପଣ ପ୍ରବଳ ଆଗ୍ରହ ଏବଂ ଯୋଗ୍ୟତା ଦେଖାଉଥିବେ । ଯଦି ଆପଣ ଜଣେ ଇଞ୍ଜିନିୟର ଏବଂ ବଡ଼ ବଡ଼ ପୋଲ ନିର୍ମାଣ କରିପାରନ୍ତି; ତେବେ କଣ ହୋଇଗଲା ସେଇଠୁ ? ସମସ୍ତେ ତ ପୋଲ ନିର୍ମାଣ କରି ପାରିବେ; କିନ୍ତୁ ଆପଣଙ୍କୁ ବେଶି ପାରିବାର ବୋଲି କୁହାଯିବ ଯଦି ଆପଣ ଅନ୍ୟ କୌଣସି କାମରେ ନିଜର ପାରଦର୍ଶିତା ଦେଖାଇପାରିବେ । ଯେଉଁ କାମ କି ଆପଣଙ୍କୁ ଜମା ଆସୁ ନ ଥିବ; ଯଦି ଆପଣ ଜଣେ ଇଞ୍ଜିନିୟର ଏବଂ କୌଣସି ନୂଆ ଜାଗାକୁ ବଦଳି ହେଲ ଏବଂ ସେ ଜାଗାରେ ଆପଣ ନିଜକୁ ଜଣେ ପ୍ରସିଦ୍ଧ ସୀତାରବାଦକ ରୂପେ ପ୍ରମାଣ କରି ଜନପ୍ରିୟ ହୋଇଗଲେ । ଲୋକମାନେ ଆପଣଙ୍କୁ ବେଶି ଯୋଗ୍ୟର ଲୋକ ବୋଲି ସମ୍ମାନ ଦେବେ ଏବଂ ଆପଣଙ୍କ ପ୍ରଶଂସା ଚାରିଆଡ଼େ ଗାଇବୁଲିବେ ।

ମୋର ପଡ଼ୋଶୀ ଜଣେ ଡାକ୍ତର ଅଛନ୍ତି । ଆସିବାର ଦୁଇମାସ ହୋଇନ ସେ ପୁରିବସ୍ତିରେ ନିଜର ଯୋଗ୍ୟତା ପ୍ରମାଣ କରିଦେଲେ । ମୁଁ ଲୋକଙ୍କୁ ପଚ୍ଚରେ

'କଥା କଣ ? ଡାକ୍ତରଙ୍କର କଣ ଏମିତି ବିଶେଷତ୍ୱ ଅଛି ? କଣ ସେ ଦେଖିବାକୁ ବେଶି ସୁନ୍ଦର ? ଉତ୍ତର ମିଳେ ନାଁ, ଦେଖିବାକୁ ସାଧାରଣ । ଅନ୍ୟ ଡାକ୍ତରମାନଙ୍କ ପରି ।

"ତା ହେଲେ କଣ ଫିସ୍ କମ ନେଉଛନ୍ତି ?

"ନାଁ ତା ମଧ୍ୟ ନୁହେଁ, ଉତ୍ତର ମିଳେ ।"

"ତେବେ କଣ ରୋଗୀଙ୍କୁ ଜଲଦି ଭଲ କରି ଦେଉଛନ୍ତି ?"

"ନାଁ ସେଥିରେ ମଧ୍ୟ କିଛି ନାହିଁ, ତା ଛଡ଼ା ଭଲ କରିବା ବା ଖରାପ କରିବା ଏସବୁ ତ ଭଗବାନଙ୍କ ହାତର—କଥା ।"

"ତା ହେଲେ କଣ ତାଙ୍କର ବିଶେଷତା ଅଛି ?" ମୁଁ ପଚାରେ ଜବାବ ମିଳେ, କଣ ଆଜ୍ଞା କହିବୁ ବଡ଼ ଯୋଗ୍ୟ ଡାକ୍ତର ଏମିତିଆ ମଜାମଜା କଥା କୁହନ୍ତି ଯେ ହସି ହସି ପେଟ ଦରଜ ହୋଇଯାଏ ।"

ଇନ୍‌ଜିନିୟର ସୀତାର ବଜାଇବା, ଡାକ୍ତର ହସ କଥା ଶୁଣାଇବା ଏ ଦେଶରେ ଯୋଗ୍ୟତାର ନିଦର୍ଶନ । ଏଥିପାଇଁ ଆପଣମାନେ ଦେଖିଥିବେ ଏ ଦେଶରେ ଯେଉଁ କାମ ଯାହା ହାତରେ ହୁଏ, ସେ ସେହି କାମ କରେ ନାହିଁ । ଏ ଦେଶରେ ଯିଏ ଫିଲ୍‌ମ ତିଆରି କରିବା କଥା ସେ ଖାଦ୍ୟ କଣ୍ଟ୍ରୋଲର ହୁଏ । ଯିଏ ଖାଦ୍ୟ କଣ୍ଟ୍ରୋଲର ହବା କଥା ସେ କବି ସମ୍ମିଳନୀରେ ଅଧ୍ୟକ୍ଷ ହୁଏ ଏବଂ ଯିଏ କବି ସମ୍ମିଳନୀରେ ଅଧ୍ୟକ୍ଷ ହେବା ପାଇଁ ଉପଯୁକ୍ତ ସେ ବଜାରରେ କୋଇଲା ବିକେ ଏବଂ ଯିଏ କୋଇଲା ବିକିବା କଥା, ସିଏ ସାଜେ ମିଲ୍‌ର ମାଲିକ ।

ଜୀବନରେ ଏସବୁ ଆଶ୍ଚର୍ଯ୍ୟ ଘଟଣା ଦେଖି ମୁଁ ସ୍ଥିର କଲି ଯେ ଯେହେତୁ ମୋ ପାଖରେ କୌଣସି କାର ନାହିଁ ଅର୍ଥାତ୍ ମୁଁ ବେକାର, ଏଣୁ କାର ବିଷୟରେ ରିସର୍ଚ୍ଚ କରିବାପାଇଁ ମୁଁ ହିଁ ଏକମାତ୍ର ଲୋକ ।

ମୋ ପୂର୍ବରୁ ଏ ବିଷୟରେ ଅନେକ ଲୋକ ମୁଣ୍ଡ ଖେଳାଇଛନ୍ତି; କିନ୍ତୁ ସେମାନଙ୍କ କାର୍ଯ୍ୟକ୍ଷେତ୍ର ମାତ୍ର ଦୁଇଶହ ବର୍ଷ ପର୍ଯ୍ୟନ୍ତ ଯାଇଛି, ତା ଆଗକୁ ଯାଇପାରି ନାହିଁ । ତାର ମାନେ ହେଲା କିଏ କିଏ କୁହନ୍ତି ଯେ କାରର ଆବିଷ୍କାର ଶହେ ବର୍ଷ ପୂର୍ବେ ହୋଇଥିଲା, ଆଉ କିଏ କିଏ କୁହନ୍ତି ଯେ ଏହାର ଆବିଷ୍କାର ଦୁଇଶହ ବର୍ଷ ତଳେ ହୋଇଥିଲା । ଏହା ପଛକୁ ଆଉ କେହି ଯାଇପାରି ନାହାନ୍ତି । କେବଳ ସମସ୍ତେ ଏକମତ ଯେ କାର ପଶ୍ଚିମ ଇନ୍‌ଜିନିୟରଙ୍କ ବୁଦ୍ଧିର ଶକ୍ତିରୁ ହିଁ ସୃଷ୍ଟି ।

କିନ୍ତୁ ମୋର ଅନୁସନ୍ଧାନ କୁହେ ଯେ କାର ପଶ୍ଚିମରେ ନୁହେଁ, ପୂର୍ବରେ ସବୁଠୁ ଆଗେ ଆବିଷ୍କାର ହୋଇଥିଲା ଏବଂ କାରର ଇତିହାସ ଦୁଇଶହ ବର୍ଷର

ପୁରୁଣା ନୁହେଁ ଏହା ହଜାର ହଜାର ବର୍ଷ ତଳର ଇତିହାସ । ପୁରୁଣା ଶାସ୍ତ୍ର ଏବଂ ଗ୍ରନ୍ଥ ସବୁରେ ଏହାର ପ୍ରମାଣ ମିଳେ । ବେଳେବେଳେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ଯେ ଯେଉଁ ଯୋଗ୍ୟ ଦେଶପ୍ରେମୀ ବସ୍ତୁରକଗଣ ଏହା ପୂର୍ବରୁ ହିଁ ରେଡ଼ିଓ, ଟେଲିଭିଜନ, ଫୋନ ଏବଂ ଉଡ଼ାଜାହାଜର ଅସ୍ତିତ୍ୱକୁ ଶାସ୍ତ୍ରରେ ପ୍ରମାଣ କରି ସାରିଥିଲେ, କୌଣସି କାରଣରୁ ସେମାନଙ୍କ ଦୃଷ୍ଟି କାର ଉପରେ ପଡ଼ିନାହିଁ ଏବଂ କୌଣସି କାରଣବଶତଃ ସେମାନେ ଏହି ମହତ୍ତ୍ୱପୂର୍ଣ୍ଣ ଆବିଷ୍କାରଟିକୁ ଭୁଲିଯାଇଛନ୍ତି; ନହେଲେ ଏ ଧୋକ୍‌କାବାଜ ପଶ୍ଚିମ ଦେଶ ଦ୍ୱାରା କାର ଆବିଷ୍କାର ହୋଇଥିବା କଥାଟାକୁ ଏତେ ସହଜରେ ମାର କ୍ଷୀର ଭଳି ପିଇଗଲେ କପରି ? (ସମ୍ଭବ ହୋଇପାରେ କାରଣ ଆଜିକାଲି ମାର କ୍ଷୀର ହେଉନାହିଁ କେବଳ ପାଉଡ଼ର ଡବା କ୍ଷୀର ହିଁ ମିଳୁଛି) ।

ଯାହା ବି ହେଉ ମୁଁ ପୁରୁଣା ଦଶ ବର୍ଷର ପରିକ୍ରମ ଓ ଝାଳ (ଝାଳ ବୋହିବାର ଏକମାତ୍ର ଅର୍ଥ ଏହା ଯେ ମୁଁ ଦଶବର୍ଷ ଧରି କମଲା ରସ ହିଁ ପିଇ ଆସୁଛି) ନିଗାଡ଼ି ମୋର ଅନୁସନ୍ଧାନ ପୂର୍ଣ୍ଣକଲି ଏବଂ ମୋର ବୟସ୍କ ସ୍ଥିର କରିନେଲି; ଯାହାକି ବର୍ତ୍ତମାନ ମୁଁ ମୋର ପ୍ରିୟ ପାଠକମାନଙ୍କ ଆଗରେ ରଖିବି ଏବଂ ଆଶାକରେ ଯେ ଆପଣମାନେ ସବୁ ନିଜ ନିଜର ଅର୍ଦ୍ଧାଂଗିନୀମାନଙ୍କ ସହିତ ମୋ ପାଇଁ ପ୍ରାର୍ଥନା କରିବେ ଏବଂ ହୋଇପାରେ ରାଜ୍ୟରେ ମତେ ମହାରଥୀ ଉପାଧି ଦେବାପାଇଁ ସୁପାରିଶ କରିବେ ଯାହା କେବଳ ଏହିସବୁ କାର୍ଯ୍ୟ ପାଇଁ ଦିଆଯାଇଥାଏ ।

ମୋର କହିବା କଥା, ପୂର୍ବେ ହିନ୍ଦୁସ୍ଥାନରେ ହିଁ କେବଳ କାର ତିଆରି ହେଉଥିଲା ଏବଂ ଏତେକାର ତିଆରି ହେଉଥିଲା ଯେ ଜାଗା ଜାଗାରେ ଧନୀଲୋକେ ସାତ ସାତଟି କାର ରଖୁଥିଲେ । ଏ କାର ଶବ୍ଦ ପଶ୍ଚିମରୁ ନୁହେଁ ଏହା ଏକ ହିନ୍ଦୁସ୍ଥାନୀ ଶବ୍ଦ ଏବଂ ବହୁପୁରୁଣା ଧର୍ମଗ୍ରନ୍ଥରୁ ହିନ୍ଦୁସ୍ଥାନରେ ପ୍ରଚଳିତ ଅର୍ଥାତ୍ ବୈଦିକ-କାଳରୁ ଶ୍ରୀ କୁଣ୍ଠାଚାର୍ଯ୍ୟଙ୍କ ପ୍ରସିଦ୍ଧ ଶବ୍ଦାବଳୀରେ ଏହି କାର ଶବ୍ଦରୁ ବହୁ ବର୍ଣ୍ଣନା କରାଯାଇଛି । ଏହି ଶବ୍ଦାବଳୀ ଏତେ ପ୍ରସିଦ୍ଧ ଯେ ଏହାକୁ ବୁଝିବା ମଧ୍ୟ କଷ୍ଟକର ହୋଇପଡ଼େ । ବର୍ତ୍ତମାନ ପର୍ଯ୍ୟନ୍ତ ଏହାର କେବଳ ଦୁଇଗୋଟି ସଂସ୍କରଣ ପ୍ରାପ୍ତ ହୋଇଛି; ଗୋଟିଏ ମ୍ୟୁନିଖ୍‌ର ମ୍ୟୁଜିୟମରେ ଥିଲା ଯାହାକୁ କି ହିଟ୍‌ଲରଙ୍କ ଆଦେଶରେ ଜଳାଇ ଦିଆଗଲା, ଦ୍ୱିତୀୟଟି ମୋ ଘରେ ଥିଲା ଯାହାକୁ କି ମୋ ସ୍ତ୍ରୀ ରାଗରେ ଜାଳି ଦେଲା । ତଥାପି ମୁଁ ମୋର ବସ୍ତୁରଣତ୍ୱ ଉପରେ ଜୋର ଦେଇ କିଛି ଶବ୍ଦ ଲେଖୁଛି, ଯେଉଁଥିରେ କି କାର ଶବ୍ଦ ମହକୁଦ୍ ଅଛି ଏବଂ ଆଉ କିଛି ଅସାହିତ୍ୟିକ ସଂସ୍କୃତ ଶବ୍ଦ ସବୁ ଅଛି ଯାହାର ଅର୍ଥ କେବଳ ଶ୍ରୀ କୁଣ୍ଠାଚାର୍ଯ୍ୟଙ୍କ ଶବ୍ଦାବଳୀର 'କାର' ଶବ୍ଦ ସହ ସମ୍ବନ୍ଧିତ । ଏ ଶବ୍ଦ ଆଜିକାଲି ଆମ ଶବ୍ଦାବଳୀରେ ମଧ୍ୟ ଦେଖାଯାଏ । କିନ୍ତୁ ଯୁଗ ବଦଳିବା ସାଙ୍ଗେ ସାଙ୍ଗେ ଏ ଶବ୍ଦର ଅର୍ଥ ମଧ୍ୟ ବଦଳିଯାଇଛି । ଯାହେଲେ ମଧ୍ୟ

ଆପଣମାନେ ଯଦ ନଜର ଉବର ବୁଦ୍ଧି ଖଟାଇ ପାରନ୍ତେ; ତେବେ ବଦଳଯାଇଥିବା ଶବ୍ଦର ଅର୍ଥର ପ୍ରକୃତ ଅର୍ଥ ବୁଝି ପାରନ୍ତେ ।

ଏ କଥା ଆପଣଙ୍କୁ ନିଶ୍ଚୟ ଜଣାଥିବ ଯେ ଆଗକାଳରେ ପ୍ରତ୍ୟେକ ଜାତିର ଲୋକମାନଙ୍କ ପାଇଁ ଜଣେ ଜଣେ ଦେବତା ଏବଂ ପରମାତ୍ମା ଥିଲେ ଯିଏ କି ଜଣେ ଆଉ ଜଣଙ୍କଠାରୁ ଭିନ୍ନ ଥିଲେ ଏବଂ ଆଗକାଳରେ କାର ରଖୁଥିବା ଲୋକଙ୍କର ନିଜ ନିଜର ଭଗବାନ ଥିଲେ ଯାହାକୁ କି ଲୋକେ କାର ଶବ୍ଦର ଆଉ ଏକ ରୂପ 'ଓଁକାର' ନାଁରେ ସ୍ମରଣ କରୁଥିଲେ । ଶ୍ରୀ କୁଣ୍ଠାଗ୍ରସ୍ତଙ୍କ ଶବ୍ଦକୋଷରେ 'ଓଁକାର' ଶବ୍ଦର ଅର୍ଥହେଲା କାର ମାଲିକଙ୍କର ଭଗବାନ ।

ଆଜକାଲି ମଧ୍ୟ 'ଓଁକାର' ଶବ୍ଦ ଭଗବାନଙ୍କ ପାଇଁ ପ୍ରଯୁକ୍ତ ହୁଏ କିନ୍ତୁ ବର୍ତ୍ତମାନ ଏହି ଶବ୍ଦ କେବଳ କାରବାଲାଙ୍କ ଭଗବାନଙ୍କ ପାଇଁ ଲାଗୁ ହେଉନାହିଁ, ସବୁ ପ୍ରକାରର ଭଗବାନଙ୍କ ପାଇଁ ଦରକାର ହେଉଛି ।

'ଓଁକାର'—ଅର୍ଥ ସେହି କାର; ଯାହାକି ଆମେ ଦେଖିପାରୁ ନାହୁଁ । ଅଥଚ ତାର ପୂଜା ଆମେ ହୃଦୟରେ ସହିତ କରୁ—ସେତେବେଳେ ତାକୁ 'ଆକାର' କୁହାଯାଏ । ଏହି କାର ଯେତେବେଳେ ଜଣା ହୋଇଯାଏ, ସେତେବେଳେ ତାକୁ 'ସାକାର' କୁହାଯାଏ । ଆଜକାଲି ଆକାର କିମ୍ବା ସାକାର ଭଗବାନଙ୍କ ପାଇଁ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ରୂପରେ ପ୍ରୟୋଗ କରାଯାଏ । କିନ୍ତୁ ଆଗକାଳରେ ବୋଧହୁଏ ଏ ଶବ୍ଦକୁ କେବଳ କାର ମାଲିକମାନେ ହିଁ ପ୍ରୟୋଗ କରୁଥିଲେ । ଆଜକାଲି ଯେଉଁ ଲୋକମାନେ କାରକୁ ଭଗବାନ ବୋଲି ମାନୁଛନ୍ତି ସେମାନେ ଏହି ଦୁଇ ଶବ୍ଦକୁ ପୁନର୍ବାର ସେହି ଦୁଇ ଅର୍ଥରେ ବ୍ୟବହାର କରିପାରିବେ ।

'ସତ୍କାର'—ଯେଉଁ ଲୋକ ସାତଟି କାରର ଅଧିକାରୀ, ତାକୁ 'ସତ୍କାର' କୁହାଯାଏ ।

ଆଜକାଲି ଏ ଶବ୍ଦ ମାନସମ୍ମାନର ଅର୍ଥରେ ବ୍ୟବହୃତ ହୁଏ । ଏଥିରୁ ପ୍ରମାଣ ମିଳୁଛି ଯେ ପୂର୍ବକାଳରେ ଯେଉଁ ଲୋକ ସାତଟି କାର ରଖୁଥିଲା, ଲୋକେ ତାକୁ ସମ୍ମାନ ଦେଉଥିଲେ କିନ୍ତୁ ଆଜକାଲି ସମୟ ଏତେ ବଦଳିଗଲାଣି ଯେ ଯେଉଁଲୋକ କେବଳ ଗୋଟିଏ କାରର ଅଧିକାରୀ ଲୋକେ ତାକୁ ମଧ୍ୟ ପୂଜା କରୁଛନ୍ତି ।

'ହାହାକାର'—କାରବାଲାର ଯେତେବେଳେ କୌଣସି ଦୁର୍ଘଟଣା ହୁଏ ସେତେବେଳେ ତାକୁ ହାହାକାର କୁହାଯାଏ । ଆଜକାଲି ସବୁ ପ୍ରକାରର ଦୁର୍ଘଟଣାକୁ 'ହାହାକାର' କୁହାଯାଉଛି ।

'ଜୟ୍ ଜୟ୍ କାର' ଆଗକାଳରେ ଯେତେ ଜଣେ ନେତା ପାଦରେ ବୁଲି ବୁଲି ଭାଷଣ ଦେବାପାଇଁ ଆସୁଥିଲା ତାଙ୍କୁ ଲୋକେ 'ଜୟ୍ ଜୟ୍' କରି ସମ୍ବର୍ଦ୍ଧନା କରୁଥିଲେ । ଆଉ ଯେବେ ସେ କାର୍‌ରେ ଆସୁଥିଲା ଲୋକେ ସେତେବେଳେ 'ଜୟ୍ ଜୟ୍ କାର' କହୁଥିଲେ । ଆଜିକାଲି ମଧ୍ୟ ଏଇଆ ହିଁ ହେଉଛି ।

'ଚମତ୍କାର'—ସୁନ୍ଦର ସୁନ୍ଦର ଗାଡ଼ିକୁ 'ଚମତ୍କାର' କହନ୍ତି—ଯେମିତି ଭର୍ମାଲା—ଯାହାକି ପ୍ରକୃତରେ 'ଧର୍ମପାଳା'ର ଅନ୍ୟ ଏକ ରୂପ ।

'ଅହଂକାର' ଆଗକାଳରେ ଯେଉଁ ଲୋକ ଗାଡ଼ି ରଖୁଥିଲା ସେ ଅନ୍ୟମାନଙ୍କଠାରୁ ନିଜକୁ ଭିନ୍ନ ରୂପରେ ଦେଖୁଥିଲା ଏବଂ ଅନ୍ୟମାନଙ୍କୁ ସେ ଘୃଣା ଚକ୍ଷୁରେ ଦେଖୁଥିଲା । ଏଣୁ ପୂର୍ବକାଳରେ କାରବାଲାଙ୍କ ମନରେ ଏହି ଗର୍ବଯୋଗୁ 'ଅହଙ୍କାର' ଶବ୍ଦର ପ୍ରୟୋଗ କରାଯାଉଥିଲା । ସେତେବେଳେ ତାଙ୍କ ପାଇଁ ଏହି ଶବ୍ଦର ପ୍ରୟୋଗ ହିଁ ଠିକ୍ ଥିଲା ।

'ବିଦ୍ୟାଳଙ୍କାର'—ଯିଏ କାର ବିଷୟରେ ସମ୍ପୂର୍ଣ୍ଣ ଜ୍ଞାନ ଅର୍ଜନ କରିଥିଲା, ତାକୁ ହିଁ ବିଦ୍ୟାଳଙ୍କାର କୁହାଯାଏ । ଆଜିକାଲି ସବୁ ପ୍ରକାର ଜ୍ଞାନ ଅର୍ଜନ କରିଥିବା ଲୋକଙ୍କୁ 'ବିଦ୍ୟାଳଙ୍କାର' କୁହାଯାଏ ।

'ଧିକ୍‌କାର'—ରାସ୍ତା ଅଧରେ ଯେତେବେଳେ କାର ବିଗିଡ଼ିଯାଏ ଓ ଆପଣଙ୍କୁ ଧକ୍‌କା ଲଗାଇବାକୁ ପଡ଼େ ଏଇ ଅବସ୍ଥାରେ 'ଧିକ୍‌କାର' ଶବ୍ଦର ବ୍ୟବହାର ହୁଏ । ଆଜିକାଲି ଏ ଶବ୍ଦର ଅର୍ଥ ବିଭିନ୍ନ ଅବସ୍ଥା ଓ ପରିବେଶରେ ବ୍ୟବହାର କରାଯାଏ ।

ଉପରେ ଦିଆଯାଇଥିବା ଶବ୍ଦଗୁଡ଼ିକୁ ମୁଁ 'ପୁରୁଣା ଶବ୍ଦାବଳୀ'ରୁ ବାହାର କରି ଆପଣମାନଙ୍କ ଆଗରେ ବାଢ଼ିଛି । କିନ୍ତୁ ଏଥିରୁ ଆପଣ ବୁଝିବେ ନାହିଁ ଯେ କାର କେବଳ ଆର୍ଯ୍ୟ ଏବଂ ହିନ୍ଦୁମାନେ ବ୍ୟବହାର କରୁଥିଲେ । କାର ମୋଗଲମାନଙ୍କ ସମୟରେ ମଧ୍ୟ ମହଜୁଦ ଥିଲା ଏବଂ 'ମହମ୍ମଦ ଶାହା'ଙ୍କ ସମୟ ପର୍ଯ୍ୟନ୍ତ କାର ବ୍ୟବହାର ହେଉଥିଲା । ଅକସ୍ମାତ୍ ଏହି ସମୟରେ 'ନାଦିର ଶାହା' ଦିଲ୍ଲୀ ଆକ୍ରମଣ କଲେ ଏବଂ ସେ ହୀରାମୋତି ଲୁଣ୍ଠନ କରିବା ସହ ବହୁ ଦାମି କାର ମଧ୍ୟ ଲୁଟିନେଲେ । ଏମିତିକି ଏହିସବୁ ପୁରୁଣା କାରରୁ କିଛି କିଛି ଏବେ ମଧ୍ୟ ଦିଲ୍ଲୀ ଏବଂ ଲକ୍ଷ୍ନୌ ସହରରେ ଦେଖିବାକୁ ମିଳେ ।

କାର୍ ଶବ୍ଦ ସଂସ୍କୃତରୁ ହିନ୍ଦୀ ଏବଂ ପରେ ହିନ୍ଦୀରୁ ଉର୍ଦ୍ଦୁକୁ ଆସିଛି । କିନ୍ତୁ ମୋଗଲ ବାଦଶାହାମାନେ ଏବଂ ପଣ୍ଡିତମାନେ ଏବଂ ଉର୍ଦ୍ଦୁ ଲେଖକମାନେ ନିଜ ନିଜର ସ୍ୱାର୍ଥପାଇଁ ଏଥିରେ ବହୁ ବ୍ୟବଧାନ ସୃଷ୍ଟି କରିଛନ୍ତି । ଏହାର ବହୁ

ସଂଶୋଧନ କରିଛନ୍ତି ଯାହାକି ଏଠାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । କେବଳ ଉଦାହରଣସ୍ୱରୂପ ଏଠାରେ ମୁଁ କିଛି ଶବ୍ଦ ଲେଖୁଛି; ଯାହାକି ଆଜି ମଧ୍ୟ ହିନ୍ଦୀ ଓ ଉର୍ଦ୍ଦୁରେ ବହୁଳଭାବେ ଦେଖାଯାଏ ଯଦିଓ ଏହାର ଅର୍ଥ ଭିନ୍ନ ହୋଇପାରେ । ଏସବୁର ପ୍ରକୃତ ଅର୍ଥ ମୁଁ "ମୁଲ୍ଲାଭାଗୋନ୍ଦ"ଙ୍କର 'ଜମିମୁଲ୍ଲ୍ୟାତ' ବହିରୁ ଉଦ୍ଧାର କରିଛି ( ଦୁର୍ଭାଗ୍ୟବଶତଃ ଏହି ଶବ୍ଦକୋଷରୁ କେବଳ ଗୋଟିଏ ବହି ବର୍ତ୍ତମାନ ବଜାରରେ ମିଳୁଛି—ସେଇ ଶବ୍ଦ, ସେଇ ଅର୍ଥ ଟିକିଏ ମଧ୍ୟ ପାର୍ଥକ୍ୟ ନାହିଁ— ଏଣୁ ଏପରି ଶୋଚନୀୟ ଅବସ୍ଥାରେ ଆଉ ବହି ବାଛିବାର ପ୍ରଶ୍ନ ହିଁ ଉଠୁନାହିଁ ) ।

ଏକଥା ମଧ୍ୟ ବହୁତ ଲୋକଙ୍କୁ ଜଣା ନଥିବ ଯେ ଏହି ମୋଗଲ ସମ୍ରାଟମାନେ ଘନ ଜଙ୍ଗଲକୁ ଶୀକାର କରି ଗଲାବେଳେ ସାଙ୍ଗରେ ବହୁସଂଖ୍ୟକ କାରନେଇ ଯାଉଥିଲେ ଏବଂ ସେଥିପାଇଁ ଜଙ୍ଗଲୀ ପଶୁମାନଙ୍କୁ ମାରିବାର ଖେଳକୁ 'ଶୀକାର' କୁହାଯାଉଥିଲା । ଏହି ଶବ୍ଦ ଆଜି ମଧ୍ୟ ଏହି ଅର୍ଥରେ ବ୍ୟବହୃତ ହେଉଛି । ବର୍ତ୍ତମାନ ଆପଣ କାର୍‌ରେ ଯାଆନ୍ତୁ କିମ୍ବା ହାତୀ, ଘୋଡ଼ାରେ ଯାଆନ୍ତୁ କିମ୍ବା ବୁଲି ବୁଲି କରି ଜଙ୍ଗଲକୁ ପଶୁ ମାରିବାକୁ ଯାଆନ୍ତୁ ସବୁକୁ 'ଶୀକାର' କୁହାଯାଏ । ଆଜିକାଲି ଲୋକେ ପୋଖରୀକୁ ଯାଇ ମାଛ ଧରିବା କାର୍ଯ୍ୟକୁ ମଧ୍ୟ 'ଶୀକାର' କହୁଛନ୍ତି ।

ସେ କାଳରେ କାରର ଚାଳକକୁ 'କାରିନ୍ଦା' କହୁଥିଲେ । ଆଜିକାଲି ଯେ କୌଣସି କାମ କରୁଥିବା ଭୃତ୍ୟକୁ ମଧ୍ୟ 'କାରିନ୍ଦା' କହୁଛନ୍ତି ।

ସେ କାଳରେ କେବଳ 'ବାଦଶାହା'ମାନେ କାର ରଖୁଥିଲେ କିମ୍ବା ଖୁବ୍ ବଡ଼ ଧନୀ ଲୋକ କିମ୍ବା ବଡ଼ ବଡ଼ ସରକାରୀ ଚାକିରିଆମାନଙ୍କ ପାଖରେ କାର ରହୁଥିଲା, ଏଥିପାଇଁ ଏଇ ବଡ଼ ବଡ଼ ସରକାରୀ ଚାକିରିଆଙ୍କୁ 'ଅହଲ୍‌କାର' କୁହାଯାଉଥିଲା ଏବଂ ସେମାନଙ୍କ ଉପରେ ଥିବା ନବାବମାନଙ୍କୁ 'ସରକାର' ଉପାଧି ପ୍ରଦାନ କରାଯାଉଥିଲା ଏବଂ ଯେଉଁ ଲୋକମାନେ ଏହି ଧନୀ ଲୋକଙ୍କ କାରର କବାଟ ଖୋଲୁଥିଲେ ସେମାନଙ୍କୁ 'ପେଶକାର' କୁହାଯାଉଥିଲା ।

ସେ ସମୟରେ ପ୍ରତ୍ୟେକ ଉର୍ଦ୍ଦୁ ଓ ହିନ୍ଦୀ ଲେଖକଙ୍କର ପାଖରେ କାର ଥିଲା ଏବଂ ଏହି କାରଯୋଗୁ ହିଁ ସେ ଲେଖକମାନଙ୍କୁ 'କଲମ୍‌କାର' କୁହାଯାଉଥିଲା ଏବଂ ସେ ଲେଖକ ଯଦି ହିନ୍ଦୀ ଲେଖକ ହୋଇଥାନ୍ତି ତେବେ ତାଙ୍କୁ 'ସାହିତ୍ୟକାର' କୁହାଯାଉଥିଲା ।

ଆଜିପରି ଅବସ୍ଥା ସେତେବେଳେ ନଥିଲା । ଆଜିକାଲି ଯାହା ପାଖରେ ଗାଡ଼ି ନାହିଁ ତାକୁ କୁହାଯାଉଛି 'କଲାକାର' ।

ବର୍ତ୍ତମାନ ମୁଁ ଏପରି ଶବ୍ଦ ସବୁର ଅବତାରଣା କରିବି ଯାହାସବୁ ପୁରୁଣା ହେଲେ ମଧ୍ୟ ସାମାନ୍ୟ ଟିକିଏ ପରିବର୍ତ୍ତନ କରିଦେଲେ ସେ ଶବ୍ଦ ସବୁ ଅଧୁନିକ

ଶବ୍ଦରେ ପରିଣତ ହେବ । 'ଅଭିନବ ଶବ୍ଦାବଳୀ'ରେ ଯଦି ନିମ୍ନଲିଖିତ ପରିବର୍ତ୍ତନ କରାଯାଏ ତେବେ ଜୀବନରେ ଆହୁରି ଅଧିକ ସତ୍ୟର ଉନ୍ମୋଚନ ହେବ ।

'ମଟୁକାର'—ଯେଉଁ ଲୋକମାନେ ଗାଡ଼ି ଉପରକୁ ପଥର ଫୋପାଡ଼ନ୍ତି ।

'ଝୁଣ୍ଟୁକାର—ଯେତେବେଳେ ଦୁଇଟି ଗାଡ଼ିର ଡ୍ରାଇଭର ରାସ୍ତାରେ ଗାଡ଼ି ଚଳାଇ ପରସ୍ପର ସହିତ ଝଗଡ଼ା କରନ୍ତି ।

'ଫିଟ୍‌କାର'—ପୁରୁଣା ସମୟର କାର ।

'ପୂକାର'—ହର୍ଣ୍ଣର ଶବ୍ଦ, ଯେତେବେଳେ ମିଠା ଶୁଣାଯାଏ ସେତେବେଳେ 'ପୂକାର' କୁହାଯାଏ ଯେତେବେଳେ ଶ୍ରୁତିକଟୁ ହୁଏ ସେତେବେଳେ 'ଲଲ୍‌କାର' କୁହାଯାଏ ।

'ଇନ୍‌କାର'—ଯେତେବେଳେ କାରର ମାଲିକ ତା ବନ୍ଧୁଙ୍କୁ କାର ଦେବାପାଇଁ ମନା କରିଦିଏ ।

'ବଦ୍‌କାର—ଯେତେବେଳେ ଲୋକ କାର୍‌ରେ ସ୍ତ୍ରୀ ଲୋକମାନଙ୍କୁ ନେଇ ବୁଲେ ।

'ନକୋକାର'—ଯିଏ ଏଥି ଉପର କାମଟି ନ କରେ ।

'ପୈକାର'—ଗାଡ଼ି ଖଣ୍ଡିଏ ପାଇବା ପାଇଁ ପ୍ରଚେଷ୍ଟାକୁ 'ପୈକାର' କୁହାଯାଏ । ପାଇଗଲା ପରେ ତାକୁ "ପୈକାଡ଼" କୁହାଯାଏ ।

'କାରନାମା'—ଯେଉଁ ଚିଠି କାରରେ ବସି ଲେଖାଯାଏ ।

'ପୁର୍‌କାର'—ଗୋଟିକରୁ ବେଶି କାର ରଖିଥିବା ମାଲିକମାନଙ୍କୁ କୁହାଯାଏ ।

'ଦର୍‌କାର'—ଏଭଳି କାର ଯାହାକୁ ଆପଣ ପାଇବା ପାଇଁ କାମନା କରିଛନ୍ତି ।

'ମକ୍‌କାର'—ସେହି ମହାପୁରୁଷ ଯିଏ ଅନ୍ୟ ଗାଡ଼ିକୁ ନିଜ ଗାଡ଼ି ବୋଲି ଭାବି ଧୋକା ଖାଏ ।

ଛାଡ଼ନ୍ତୁ ଏ ପୁରୁଣା ଜମାନା ବୁଲିଗଲା । ଏ ନୂଆ ଜମାନାର ଗାଡ଼ି ସାଙ୍ଗକୁ ମୁଁ କଣ କହିବି । ଇକ୍‌ବାଲ କହିଛନ୍ତି—"କାର ସବୁ ବଣା ହୋଇଗଲାଣି—ଏଣିକି ଆଜିକାଲିର ଲମ୍ବା ଗାଡ଼ିମାନଙ୍କ ପ୍ରତି ଏକ ଆହ୍ୱାନ—ଆଜିକାଲି କାରର ଲମ୍ବା ଯେତେ ବଢ଼ି ବଢ଼ି ଯାଉଛି, ମଣିଷର ମନ ସେତେ ସାନ ହୋଇ ଯାଉଛି । ଏପରି ଅବସ୍ଥାରେ କିଏ ବା ଗରିବ ଲୋକଟିକୁ ତା କାର୍‌ରେ ଉଠାଇବ—ଚାଲନ୍ତୁ ଏଥର ବସ୍‌ଷ୍ଟାଣ୍ଡ ଆଡ଼େ ମୁହାଁଇବା··· ।

# ଜାମୁକୋଳି ଗଛ

ରାତିସାରା ସେଦିନ ପ୍ରବଳ ଝଡ଼ତୋଫାନ ଲାଗିରହିଥିଲା । ପରଦିନ ସକାଳୁ ଦେଖାଗଲା ସେକ୍ରେଟେରିଏଟର ବଗିଚାରେ ଥିବା ଏକ ବିରାଟ ଜାମୁକୋଳି ଗଛ ଏ ପ୍ରବଳ ବାତ୍ୟାର ପ୍ରକୋପରେ ଉପୁଡ଼ି ପଡ଼ିଛି । ଯେତେବେଳେ ବଗିଚାର ମାଳି ଏହା ଦେଖିଲା ସେତେବେଳେ ତାକୁ ଜଣାଗଲା ଯେ, ଜାମୁକୋଳି ଗଛ ତଳେ ଜଣେ ଲୋକ ମଧ୍ୟ ଚାପି ହୋଇ ପଡ଼ିଛି ।

ଏହା ଦେଖି ମାଳିର ଅବସ୍ଥା କହିଲେ ନ ସରେ । ସେ ଦଉଡ଼ି ଦଉଡ଼ି ଚପରାସୀ ପାଖକୁ ଗଲା, ଚପରାସୀ ଦଉଡ଼ି ଦଉଡ଼ି କିରାଣୀ ପାଖକୁ ଗଲା, କିରାଣୀ ଦଉଡ଼ି ଦଉଡ଼ି ବଡ଼ବାବୁଙ୍କ ପାଖକୁ ଗଲା । ବଡ଼ବାବୁ ତତ୍କ୍ଷଣାତ୍ ବଗିଚାକୁ ଆସିଲେ । କ୍ଷଣକମଧ୍ୟରେ ଗଛଟିକୁ ଏବଂ ତଳେ ଚାପିହୋଇଥିବା ଲୋକଟିକୁ ଦେଖିବା ପାଇଁ ଗଛ ଚାରିପଟେ ଭିଡ଼ ଜମିବାକୁ ଲାଗିଲା ।

ଜଣେ କିରାଣୀ କହିଲା, "ଆହା ! ବିଚରା ଜାମୁକୋଳି ଗଛରେ କେତେ ଜାମୁକୋଳି ଫଳୁଥିଲା ଶେଷକୁ ଉପୁଡ଼ିପଡ଼ିଲା ।" ଆଉ ଜଣେ ସାଥୀ କିରାଣୀ କହିଲା "ଆହା ! ଏ କୋଳିସବୁ କେତେ ରସାଳ ଓ ସ୍ୱାଦପୂର୍ଣ୍ଣ ଥିଲା ।"

ତୃତୀୟ ଜଣଙ୍କ ବଡ଼ ଦୁଃଖରେ ମନ୍ତବ୍ୟ ଦେଲା, "ମୁଁ ସବୁବେଳେ ମୋ ଥଳୀରେ ଜାମୁକୋଳି ଭର୍ତ୍ତି କରି ଘରକୁ ନେଇଯାଉଥିଲି, ମୋ ପିଲାମାନେ କେତେ ଖୁସିରେ ଏସବୁ ଖାଉଥିଲେ ।"

"କିନ୍ତୁ ଏ ମଣିଷଟି··· । ମାଳିଟି ଚାପିହୋଇ ରହିଥିବା ଲୋକ ଆଡ଼କୁ ଇଶାରାଦେଇ କହିଲା ।"

ବଡ଼ବାବୁ ଏ ଲୋକଟିର କଥା ଭାବି ଭାବି ଚିନ୍ତାରେ ଡୁବିଯାଉଥିଲେ ।

ସେଠାରେ ଠିଆହୋଇଥିବା ଅନ୍ୟ ଏକ ପିଅନ ମନ୍ତବ୍ୟ କଲା, "କେଜାଣି ମରିଛି ନାଁ ଜୀଇଛି ?" ଯାଖରେ ଏ କଥା ଶୁଣି ଅନ୍ୟଜଣକ ମୁହଁରୁ ବାହାରି ଆସିଲା "ଏତେବଡ଼ ଗଛ ଯାହା ପିଠିରେ ପଡ଼ିବ ସେ କେବେ ବଞ୍ଚିପାରେ ?"

ଏସବୁ କଥା ଶୁଣି ଚୁପି ହୋଇ ରହିଥିବା ଲୋକଟି ବଡ଼ କଷ୍ଟରେ କହିଲା, "ମୁଁ ବଞ୍ଚିଛି ମୁଁ ବଞ୍ଚିଛି ମୋତେ ବଞ୍ଚାଅ ।" କିରାଣୀ ଜଣକ ଆଶ୍ଚର୍ଯ୍ୟରେ ତା ମୁହଁକୁ ଅନାଇ ରହିଲା । ମାଳି କହିଲା, ଜଲଦି ଗଛକୁ ହଟାଇ ଦେଇ ଏ ଲୋକଟିକୁ ହଟାଇବା ଦରକାର । ଏହା ଶୁଣି ଅନ୍ୟ ଜଣେ ହାଡ଼ଡାଢ ମୋଟା ଅଲସୁଆ ପିଅନ ଆସିଲା ଏବଂ ଗଛକୁ ହଲାଇ ଦେଇ କହିଲା । "ଇଲେ ବାପାଲେ ଏତେ ବିରାଟ ଗଛକୁ କିଏ ହଟାଇ ପାରିବ ?" ମାଳିଟି ଉତ୍ତର ଦେଲା, "ମୁସକିଲ୍ କ'ଣ, ଯଦି ବଡ଼ବାବୁ ହୁକୁମ ଦେବେ ତେବେ ଜଣେ କଣ ସାରା ଅଫିସ ଆସି ଏ କାମରେ ଲାଗିଯିବେ ଏବଂ ଲୋକଟି ବଞ୍ଚିଯିବ ।" ସମସ୍ତେ ଏକ ସଙ୍ଗରେ ପ୍ରସ୍ତୁତ ହୋଇଗଲେ ଏବଂ ଏକ ସ୍ୱରରେ କହିଉଠିଲେ "ତେବେ ଲଗାଅ ଜୋର ।" ଏ କଥା ଶୁଣି ବଡ଼ବାବୁ କହି-ଉଠିଲେ, "ରୁହ ରୁହ ମୁଁ ଟିକେ ଅଣ୍ଡରସେକ୍ରେଟେରୀଙ୍କୁ ପଚାରିଆସେ ।" ସମସ୍ତେ ପୁଣି ବନ୍ଦ ହୋଇଗଲେ ।

ବଡ଼ବାବୁ ଦଉଡ଼ି ଦଉଡ଼ି ଅଣ୍ଡର ସେକ୍ରେଟେରୀଙ୍କ ପାଖକୁ ଗଲେ, ଅଣ୍ଡର ସେକ୍ରେଟେରୀ ଡେପୁଟି ସେକ୍ରେଟେରୀଙ୍କ ପାଖକୁ ଗଲେ, ଡେପୁଟି ସେକ୍ରେଟେରୀ ଜଏଣ୍ଟ ସେକ୍ରେଟେରୀଙ୍କ ପାଖକୁ ଗଲେ, ଜଏଣ୍ଟ ସେକ୍ରେଟେରୀ ଚିଫ୍ ସେକ୍ରେଟେରୀଙ୍କ ପାଖକୁ ଗଲେ, ଚିଫ୍ ସେକ୍ରେଟେରୀ ମନ୍ତ୍ରୀଙ୍କ ପାଖକୁ ଗଲେ । ମନ୍ତ୍ରୀ ଚିଫ୍ ସେକ୍ରେ-ଟେରୀଙ୍କୁ କଣ କହିଲେ, ଚିଫ୍ ସେକ୍ରେଟେରୀ ଜଏଣ୍ଟ ସେକ୍ରେଟେରୀଙ୍କୁ କଣ କହିଲେ, ଜଏଣ୍ଟ ସେକ୍ରେଟେରୀ ଡେପୁଟି ସେକ୍ରେଟେରୀଙ୍କୁ କଣ କହିଲେ, ଡେପୁଟି ସେକ୍ରେଟେରୀ ଅଣ୍ଡର ସେକ୍ରେଟେରୀଙ୍କୁ କଣ କହିଲେ, ଫାଇଲ ଚାଲିଲା--ଏମିତି ଅଧାଦିନ ଚାଲିଗଲା ।

ଦ୍ୱିପହରେ ଖାଇବା ଛୁଟି ବେଳେ ଚୁପ ହୋଇ ରହିଥିବା ଲୋକଟିର ଚାରି ପାଖରେ ଭିଡ଼ ଜମିବାକୁ ଆରମ୍ଭ କରିଥିଲା । କେତେଜଣ କିରାଣୀ ସମସ୍ୟାଟିକୁ ନିଜେ ନିଜେ ଫଇସଲା କରିବାକୁ ଚାହୁଁଥିଲେ । ସେମାନେ ଉପର ମହଲର ନିଷ୍ପତ୍ତିକୁ ଅପେକ୍ଷା ନ କରି ନିଜେ ନିଜେ ଗଛଟିକୁ ହଟାଇ ଦେବାପାଇଁ ବିଚାର କରୁଥିଲେ । ଏତିକିବେଳେ ବଡ଼ବାବୁ ଫାଇଲ ନେଇ ଦଉଡ଼ି ଦଉଡ଼ି ଆସିଲେ ଏବଂ କହିଲେ, "ଆମେ ସବୁ ଏ ଗଛକୁ ଏଠାରୁ ହଟାଇଦେଇ ପାରିବା ନାହିଁ । ଆମେସବୁ ବ୍ୟାପାର ବିଭାଗର ଲୋକ ଆଉ ଗଛର ସମସ୍ୟା ହେଉଛି କୃଷି ବିଭାଗର । ମୁଁ ଏହି ଫାଇଲଟିକୁ ଅର୍ଜେଣ୍ଟ ସିଲ୍ ମାରି କୃଷି ବିଭାଗକୁ ପଠାଇ ଦେଉଛି । ସେଠୁ ଉତ୍ତର ଆସିଲେ ଏ ଗଛଟିକୁ ହଟାଇ ଦିଆଯିବ ।"

ପରଦିନ କୃଷି ବିଭାଗରୁ ଉତ୍ତର ଆସିଗଲା, "ଏହି ଗଛ ବ୍ୟାପାର ବିଭାଗର ବଗିଚାରେ ପଡ଼ିଛି । ତେଣୁ ଏଠାରୁ ହଟାଯିବା ନ ଯିବା କଥା କେବଳ ବ୍ୟାପାର ବିଭାଗ ବୁଝିବ ।

ଏ ଉତ୍ତର ପଢ଼ି ବ୍ୟାପାର ବିଭାଗକୁ ବହୁତ ରାଗ ମାଡ଼ିଲା । ସେମାନେ ପୁଣି ଲେଖିଲେ ଗଛ ହଟିବା ବା ନ ହଟିବା କୃଷି ବିଭାଗର ଦାୟିତ୍ୱ । ଏଥିରେ ବ୍ୟାପାର ବିଭାଗର କୌଣସି ସମ୍ପର୍କ ନାହିଁ ।

ପୁଣି ଫାଇଲ ଚାଲିଲା । ସନ୍ଧ୍ୟା ସମୟକୁ ଜବାବ ଆସିଲା, "ଆମେ ଏ ସମସ୍ୟାକୁ ଉଦ୍ୟାନ ବିଭାଗ ହାତରେ ଦେଇ ଦେଉଛୁ । କାରଣ ଏହା ଗୋଟିଏ ଫଳନ୍ତ ଗଛର ସମସ୍ୟା—କୃଷି ବିଭାଗ କେବଳ କ୍ଷେତବାଡ଼ିର କଥା ବୁଝେ । ଏଣୁ ଏ ଏକ ଫଳନ୍ତ ଜାମୁକୋଲି ଗଛର ସମସ୍ୟା ହୋଇଥିବାରୁ ଏହାକୁ ଉଦ୍ୟାନ ବିଭାଗ ହାତକୁ ଦିଆଯାଉଛି ।"

ସନ୍ଧ୍ୟା ଅତିକ୍ରମ ହେଲା । ରାତି ଆସିଲା । ମାଳିଟି ଚାପି ହୋଇ ରହିଥିବା ଲୋକଟିକୁ ଭାତ ଡାଲି ଖୋଇଲା । ସେତେବେଳକୁ ଗଛ ଚାରିପାଖେ ପୋଲିସ, କାଳେ ଲୋକମାନେ ନିୟମ କାନୁନ୍‌କୁ ହାତକୁ ନେଇ ଗଛଟିକୁ ହଟାଇ ଦେବେ । ଏଥିପାଇଁ । କିନ୍ତୁ ଗୋଟିଏ ପୋଲିସ କନେଷ୍ଟବଲ ହୃଦୟରେ ସାମାନ୍ୟ ଦୟା ଆସିଲା ଏବଂ ସେ ମାଳୀକୁ ଉକ୍ତ ଲୋକଟିକୁ ଖାଇବାକୁ ଦେବାପାଇଁ ଅନୁମତି ଦେଲା ।

ଶୋଇବା ସମୟରେ ମାଳୀଟି କହିଲା, "ତମର ଫାଇଲ ଚାଲିଛି । ଆଶା ଅଛି କାଲି ସୁଦ୍ଧା ଫଇସଲା ହୋଇଯିବ ।

ଚାପି ହୋଇପଡ଼ିଥିବା ଲୋକଟି କିଛି ଉତ୍ତର ଦେଲା ନାହିଁ । ମାଳିଟି ଗଛକୁ ଭଲ ଭାବରେ ନିରୀକ୍ଷଣ କଲା ଏବଂ କହିଲା, "ତମର ଭାଗ୍ୟ ଭଲ ଗଛଟି ପିଠି ଉପରେ ପଡ଼ିଲା, ଯଦି ଅଣ୍ଟା ଉପରେ ପଡ଼ିଥାନ୍ତା; ତେବେ ତମର ମେରୁଦଣ୍ଡ କଡ଼କଡ଼ ହୋଇ ଭାଙ୍ଗି ଯାଇଥାନ୍ତା ।

ଚାପି ହୋଇ ପଡ଼ିଥିବା ଲୋକଟି କିଛି ନ କହି ଚୁପ ରହିଲା ।

ମାଳି କହିଲା ଏଠି ଯଦି ତମର କେହି ସମ୍ପର୍କୀୟ ଲୋକ ଥାଆନ୍ତି; ତେବେ ମତେ ତାଙ୍କର ଠିକଣା ଦେଲେ ମୁଁ ତାଙ୍କୁ ଖବର ଦେଇଦେବି ।"

ଲୋକଟି କହିଲା, "ମୋର ଏ ଦୁନିଆରେ କେହି ନାହାନ୍ତି ।"

ମାଳିଟି ଏକଥା ଶୁଣିଲା ଏବଂ ଦୀର୍ଘଶ୍ୱାସ ଛାଡ଼ି ସେଠାରୁ ନିଷ୍କ୍ରାନ୍ତ ହେଲା ।

ତୃଷାସ୍ତ୍ର ବନ ଉଦ୍ୟାନ ବିଭାଗରୁ ଉତ୍ତର ଆସିଗଲା । ଉତ୍ତରଟା ନିହାତି ବ୍ୟଙ୍ଗପୂର୍ଣ୍ଣ ଥିଲା । ଉଦ୍ୟାନ ବିଭାଗର ଯେଉଁଲୋକଟି ସାହିତ୍ୟପ୍ରେମୀ ଭଳି ଜଣା-ପଡ଼ୁଥିଲେ । ସେ ଲେଖିଥିଲେ, "ଆଶ୍ଚର୍ଯ୍ୟର କଥା ଯେତେବେଳେ ମୁଁ ଏବଂ ଆମ ବିଭାଗର ସମସ୍ତ କର୍ମକର୍ତ୍ତା ବୃକ୍ଷରୋପଣ କାର୍ଯ୍ୟରେ ନିବୃତ୍ତ ଏବଂ ବୃକ୍ଷ କାଟିବା ନିଷେଧ ବୋଲି ସବୁଆଡ଼େ କହୁଥିବୁ ସେହି ଅବସ୍ଥାରେ ଏପରି ଏକ ଫଳନ୍ତ ଗଛକୁ କାଟିବା ପାଇଁ ଆମେ କୌଣସିମତେ ଅନୁମତି ଦେଇ ପାରିବୁ ନାହିଁ ।"

ତା ହେଲେ ଏବେ କଣ କରାଯିବ ! ଏକଥା ଶୁଣି ଜଣେ କହିଲା, "ଯଦି ଏ ଗଛକୁ କଟାଯାଇ ପାରିବ ନାହିଁ ତେବେ ଏ ଲୋକଟିକୁ କାଟି ବାହାର କରି ଦିଆଯାଉ ।"

ଲୋକଟି ପୁଣି କହିବାକୁ ଲାଗିଲା, "ଯଦି ଏ ଚାପି ହୋଇପଡ଼ିଥିବା ମଣିଷଟିକୁ ଅଣ୍ଟା ପାଖରୁ କଟାଯାଏ ତେବେ ଅଧା ଲୋକ ଏପଟେ ବାହାରି ଆସିବ ଏବଂ ବାକି ଅଧକ ଆରପଟେ ବାହାରି ଆସିବ ଏବଂ ଗଛ ମଧ୍ୟ ତା ନିଜ ସ୍ଥାନରେ ଠିକ୍ ରହିବ ।"

ଏହା ଶୁଣି ଚାପି ହୋଇ ପଡ଼ିଥିବା ଲୋକଟି ଆପତ୍ତି କଲା, "କିନ୍ତୁ ଏମିତି କଲେ ତ ମୁଁ ମରିଯିବି ।"

ଅନ୍ୟ ଜଣେ କିରାନୀ ମନ୍ତବ୍ୟ ଦେଲା, "ହଁ ଏ ବି ଠିକ୍ କଥା ।"

ପ୍ରଥମରୁ ଯେଉଁ ଲୋକଟି ଯୁକ୍ତି ବାଢ଼ୁଥିଲା ସେ ନିଜର ଯୁକ୍ତିକୁ ସମର୍ଥନ କରିବା ପାଇଁ କହିଲା, "ଆଜିକାଲି ପ୍ଲାଷ୍ଟିକ ସର୍ଜେରୀ" ବହୁତ ଉନ୍ନତି କଲାଣି । ମୁଁ ଭାବୁଛି ଯଦି ଏ ଲୋକଟିକୁ ମଝିରୁ କାଟି କରି ବାହାର କରି ଦିଆଯାଏ ତେବେ ପ୍ଲାଷ୍ଟିକ ସର୍ଜେରୀ ଦ୍ୱାରା ଏହାର ଶରୀର ଆଉ ମୁଣ୍ଡକୁ ଆହୁରି ଥରେ ଯୋଡ଼ାଯାଇ ପାରନ୍ତା ।"

ଏଥର ଫାଇଲଟିକୁ ମେଡ଼ିକାଲ ଡିପାର୍ଟମେଣ୍ଟକୁ ପଠେଇ ଦିଆଗଲା । ମେଡ଼ି-କାଲ ଡିପାର୍ଟମେଣ୍ଟ ସାଙ୍ଗେ ସାଙ୍ଗେ ଏହା ଉପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ । ସବୁଠୁ ବଡ଼ ନାମଯାଦା ପ୍ଲାଷ୍ଟିକ ସର୍ଜନଙ୍କ ପାଖକୁ ଲୋକଟିର କେଶ୍ ପଠାଇ ଦିଆଗଲା ଏବଂ ତତ୍କ୍ଷଣାତ୍ ସେ ନାନା ପ୍ରକାର ପରୀକ୍ଷା ନିରୀକ୍ଷା ଆରମ୍ଭ କରି ଦେଲେ ଲୋକଟିର ଉପରେ ଏବଂ ଶେଷରେ ମନ୍ତବ୍ୟ ଦେଲେ ପ୍ଲାଷ୍ଟିକ ସର୍ଜରୀ ହୋଇ-ପାରିବ, ଅପରେସନ ସମ୍ଭବ ମଧ୍ୟ ହେବ; କିନ୍ତୁ ଲୋକଟି ମରିଯିବ ।

ଏଣୁ ଏ ପ୍ରକାର ନିଷ୍ପତ୍ତିକୁ ମଧ୍ୟ ରଦ୍ଦ କରି ଦିଆଗଲା ।

ଘୋଷ ହେବାରୁ ମାଳତି ଚୁପି ହୋଇ ରହିଥିବା ଲୋକଟିର ମୁହଁରେ ଗଣ୍ଡେ ଖେଚେଡ଼ି ଖୋଷି ଖୋଷି ତାକୁ କହିଲା, "ବର୍ତ୍ତମାନ ମାମଲା ବହୁ ଉପରକୁ ଯାଇ-ଗଲାଣି, ଶୁଣାଯାଉଛି କାଲି ସେକ୍ରେଟେରିଏଟ୍‌ର ସମସ୍ତ ସେକ୍ରେଟେରୀମାନଙ୍କର ମିଟିଂ ହେବ ଏବଂ ତମର କେସ୍ ସେଇଠି ପଡ଼ିବ ଆଶା ଅଛି ଖୁବ୍ ଶୀଘ୍ର ସମାଧାନ ହୋଇଯିବ ।"

ତଳେ ଚୁପି ହୋଇ ରହିଥିବା ଲୋକଟି ସବୁ ଶୁଣିଲା ଏବଂ ଏକ ଲମ୍ବା ଦୀର୍ଘଶ୍ୱାସ ଛାଡ଼ି କହିଲା, "କାହାକୁ କହିବି ଭାଇ ଏ ଦୁଃଖ କାହାଣୀ

ଜାମୁଗଛ ତଳେ ଆଇ ଦେବେ ମୋତେ ତ୍ରାଣୀ ।"

ମାଳତି ଏକଥା ଶୁଣି ପାଟିରେ ଆଙ୍ଗୁଠି ଦେଲା ଏବଂ ଚକିତ ହୋଇ କହିଲା କ'ଣ ଆପଣ ଜଣେ କବି ? ଚୁପି ହୋଇ ରହିଥିବା ଲୋକଟି କେବଳ ନୀରବରେ ମୁଣ୍ଡ ହଲାଇଲା ।

ତା'ପରଦିନ ମାଳି ଚପରାସୀକୁ କହିଲା, ଚପରାସୀ କିରାଣୀକୁ ଏବଂ କିରାଣୀ ବଡ଼ବାବୁଙ୍କୁ ଏହିପରି ସାରା ସେକ୍ରେଟେରିଏଟ୍‌ରେ ଗୁଜବ ଖେଳିଗଲା କି ଲୋକଟି ଜଣେ କବି । କହିବା ବାହୁଲ୍ୟ କି ଏଥର ଚୁପି ହୋଇପଡ଼ିଥିବା କବିଙ୍କୁ ଦେଖିବା-ପାଇଁ ପୁଣି ଭିଡ଼ ଜମିଲା ଏବଂ ଏହାର ଚର୍ଚ୍ଚା କ୍ରମେ ସହରକୁ ବ୍ୟାପିଗଲା । ସହରର ପ୍ରତି ଗଳି କନ୍ଦିରୁ ଅନ୍ୟ କବିମାନେ ମଧ୍ୟ ଜମା ହେବାକୁ ଲାଗିଲେ । ସେକ୍ରେଟେରିଏଟ୍ ବଗିଚାରେ ଗୋଟିଏ କବି ସମ୍ମିଳନୀ ଭଳି ବାତାବରଣ ଖେଳିଗଲା । ଯେଉଁ କିରାଣୀ ଏବଂ ସେକ୍ରେଟେରୀମାନଙ୍କର କବିତା ପ୍ରତି ସାମାନ୍ୟ ଆସକ୍ତି ଥିଲା ସେମାନେ ମଧ୍ୟ ଅଫିସରୁ ଘରକୁ ନ ଯାଇ ସେଇଠି ଅଟକି ରହିଲେ । କେହି କେହି ମଧ୍ୟ ନିଜ ନିଜର କବିତା ଆବୃତ୍ତି କରି ଲୋକଟିକୁ ଶୁଣାଇବାକୁ ଲାଗିଲେ ।

ଏ ଖବର ସେକ୍ରେଟେରିଏଟ୍‌ରେ ବ୍ୟାପିଯିବାକ୍ଷଣି ଫାଇଲର ଗତି ମଧ୍ୟ ବଦଳିଗଲା । "ସେକ୍ରେଟେରିଏଟ୍‌ର ସବ୍‌କମିଟି ନିଷ୍ପତ୍ତି କଲା ଯେ ଫାଇଲଟି ସାଂସ୍କୃତିକ ବିଭାଗକୁ ଦିଆଯାଉ ଏହା ଉଦ୍ୟାନ ବିଭାଗ କି କୃଷି ବିଭାଗର କାର୍ଯ୍ୟ ନୁହେଁ କାରଣ ଏଥିରେ ଜଣେ କବିଙ୍କ ଜୀବନ ଜଡ଼ିତ । ଏଣୁ ସାଂସ୍କୃତିକ ବିଭାଗକୁ ତାକିଦ କରାଗଲା ଯେ ସେମାନେ ଜଲଦି କବିଙ୍କୁ ମୁକ୍ତ ଦଅନ୍ତୁ ।

ଫାଇଲ ପୁଣି ଚାଲିଲା · ସାଂସ୍କୃତିକ ବିଭାଗର ଅନେକ କୋଠରୀ ଡେଇଁ ପହଞ୍ଚିଲା ସାହିତ୍ୟ ଏକାଡ଼େମୀର ସେକ୍ରେଟେରୀଙ୍କ ପାଖରେ । ସେଠାରୁ ସେକ୍ରେଟେରୀ

ନିଜ ଗାଡ଼ିରେ ବାହାରିଲେ ଏବଂ ସ୍ଲିପି ହୋଇପଡ଼ିଥିବା ଲୋକଟି ପାଖରେ ପହଞ୍ଚିଲେ ଏବଂ ତତ୍‌କ୍ଷଣାତ୍ ତାର ଇଣ୍ଟରଭ୍ୟୁ ନେଲେ...

ପ୍ରଶ୍ନ—ଆପଣ ଜଣେ କବି ?

ଉ—ଆଜ୍ଞା ହଁ ।

ପ୍ରଶ୍ନ—ଆପଣଙ୍କ ଛଦ୍ମ ନାମ ?

ଉ—ତୁଷାର କଣା ।

ତୁଷାର କଣା ! .... ! ସେକ୍ରେଟେରୀ ଆଶ୍ଚର୍ଯ୍ୟ ହେଲେ । କଣ ଆପଣ ସେହି ତୁଷାର କଣା ଯାହାଙ୍କ ଗଦ୍ୟ ସଙ୍କଳନ "ତୁଷାର କଣାର ଫୁଲ" ସଦ୍ୟ ପ୍ରକାଶ-ପାଇଛି··· ? କବି ବଡ଼ କଷ୍ଟରେ ମୁଣ୍ଡ ହଲାଇଲେ ।

ପୁଣି ପ୍ରଶ୍ନ—ଆପଣ କଣ ଆମର ସାହିତ୍ୟ ଏକାଡ଼େମୀର ଜଣେ ସଭ୍ୟ....?

ଉ—ନାଁ ।

ଆଶ୍ଚର୍ଯ୍ୟ ଏତେ ବଡ଼ କବି ଯିଏ କି 'ତୁଷାର କଣା'ର ଲେଖକ ଅଥଚ ଆମ ସାହିତ୍ୟ ଏକାଡ଼େମୀର ସଭ୍ୟ ନୁହନ୍ତି । ଓଃ କେତେବଡ଼ ଭୁଲ ହୋଇଲା ଆମର ' ଏତେବଡ଼ କବି ଅଥଚ ଅନ୍ଧାରରେ ରହିଛନ୍ତି, ଆଲୋକକୁ ଆସିପାରି ନାହାନ୍ତି ।"

ଅନ୍ଧାରରେ ନୁହେଁ ମୁଁ ଏ ଗଛ ତଳେ ଦବି ପଡ଼ିଛି, ଦୟାକରି ମତେ ଏ ଗଛତଳୁ ବାହାର କରନ୍ତୁ । "କବିଙ୍କର ଆକୁଳ ପ୍ରଶ୍ନ ସେକ୍ରେଟେରୀଙ୍କୁ ଆନ୍ଦୋଳିତ କଲା ସେ କବିଙ୍କୁ ଆଶ୍ୱାସନା ଦେଲେ "ମୁଁ ତତ୍‌କ୍ଷଣାତ୍ ବନ୍ଦୋବସ୍ତ କରୁଛି ।"

ତା'ପରଦିନ ସାହିତ୍ୟ ଏକାଡ଼େମୀର ସେକ୍ରେଟେରୀ ଦଉଡ଼ି ଦଉଡ଼ି ଆସିଲେ ଏବଂ କବିଙ୍କୁ ବଧାଇ ଜଣାଇ କହିଲେ, "ଆପଣ ସାହିତ୍ୟ ଏକାଡ଼େମୀର ସଭ୍ୟରୂପେ ମନୋନୀତ ହୋଇଛନ୍ତି ଏଣୁ ଆମର ମୁହଁ ମିଠା କରନ୍ତୁ ।"

କିନ୍ତୁ କବିଙ୍କ ପୁଣି ସେହି ଆକୁଳ ପ୍ରାର୍ଥନା—ଦୟାକରି ମତେ ଏ ଗଛତଳୁ ବାହାର କରନ୍ତୁ, ମୋର ନିଃଶ୍ୱାସ ରୁନ୍ଧିହୋଇ ଯାଉଛି । ଓଃ ଭୀଷଣ କଷ୍ଟ ··ଓଃ···।

ସେକ୍ରେଟେରୀ ଉତ୍ତର ଦେଲେ ଆମେ ଯାହା କରିବାର କଥା କରିସାରିଛୁ ଆଉ ଏଠୁକ ଅଧିକା ଆମେ କରିପାରୁ କି ଯଦି ଆପଣ ମରିଯାଆନ୍ତି, ତେବେ ଆପଣଙ୍କ ସ୍ତ୍ରୀ ଓ ପିଲାଙ୍କୁ ଆମେ ପେନ୍‌ସନ୍ ଦେଇପାରୁ ଏବଂ ତା ମଧ୍ୟ ଯଦି ଆପଣ ଦରଖାସ୍ତ ଦିଅନ୍ତି........ ।

ଝୁପି ହୋଇଥିବା କବିଟି ଥର ଥର କଣ୍ଠରେ କହିଲେ, 'କିନ୍ତୁ ମୁଁ ଯେ ବର୍ତ୍ତମାନ ବଞ୍ଚିଛି, ଦୟାକରି ମତେ ବଞ୍ଚାନ୍ତୁ ।

କିନ୍ତୁ ଏଇଠି ଆମର ଅସୁବିଧା କାରଣ ଆମର କାମ କେବଳ ସାଂସ୍କୃତିକ କାର୍ଯ୍ୟ କରିବା ଆଉ ଗଛ କାଟିବା କାମ କାଳି କଲମରେ ହୁଏ ନାହିଁ ଏହା କରତ ଏବଂ କୁରାଢ଼ୀ ସହିତ ସମ୍ପୃକ୍ତ ଯେଉଁଥିପାଇଁ ଆମେ ଏଇ ଫାଇଲକୁ ଅର୍କେଷ୍ଟ୍ରା ଫୁଲ୍ ମାଣ ଜଙ୍ଗଲ ବିଭାଗକୁ ପଠାଇ ଦେଉଛୁ ।

ସନ୍ଧ୍ୟାବେଳକୁ ମାଳି ଆସି କବିଙ୍କୁ କହିଲା, "କାଲି ସକାଳେ ଜଙ୍ଗଲ ବିଭାଗର ଲୋକେ ଆସି ଏ ଗଛକୁ କାଟିବେ ଏବଂ ତମର ଜୀବନ ବଞ୍ଚିଯିବ ।"

ମାଳି ବହୁତ ଖୁସିଥିଲା—ଚାପି ହୋଇ ରହିଥିବା ଲୋକଟିର ସ୍ୱାସ୍ଥ୍ୟ ଅନ୍ତେ ଆସ୍ତେ କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଥିଲା । ସେ ଚିନ୍ତା କରୁଥିଲା କେମିତି ହେଲେ ସକାଳ ପର୍ଯ୍ୟନ୍ତ ତାକୁ ଜୀବନ ସହିତ ସଂଗ୍ରାମ କରିବାକୁ ପଡ଼ିବ । ସେ କୌଣସି ମତେ କାଲି ପର୍ଯ୍ୟନ୍ତ ବଞ୍ଚିବାକୁ ପଡ଼ିବ ।

ଆରଦିନ ଜଙ୍ଗଲ ବିଭାଗର କର୍ମଚାରୀମାନେ ଯେତେବେଳେ କୁରାଢ଼ି କରତ ନେଇ ପହଞ୍ଚିଲେ ସେତେବେଳେ ତାଙ୍କୁ ଗଛ କାଟିବାକୁ ବନ୍ଦ କରାଗଲା । ଖବର ନେବାରେ ଜଣାଗଲା ଯେ ବିଦେଶ ବିଭାଗରୁ ହୁକୁମ ଆସିଛି "ଏ ଗଛକୁ ଦଶବର୍ଷ ତଳେ ପିଟୋନିୟା ରାଜ୍ୟର ପ୍ରଧାନମନ୍ତ୍ରୀ ସେକ୍ରେଟେରିଏଟ୍‌ର ବଗିଚାରେ ଲଗାଇ-ଥିଲେ ଯଦି ବର୍ତ୍ତମାନ ଏ ଗଛ କଟାଯାଏ; ତେବେ ପିଟୋନିୟା ରାଜ୍ୟର ସରକାର ଆମ ରାଜ୍ୟ ସହିତ ବନ୍ଧୁତା ଛିନ୍ନ କରିଦେବେ ।

ଏକଥା ଶୁଣି ଜଣେ କିରାଣୀ ଖୁବ୍ ପାଟିକରି କହିଲା, "କିନ୍ତୁ ଏଥିରେ ଯେ ଜଣେ ଲୋକର ଜୀବନ ସମ୍ପୃକ୍ତ ।"

ଆଉ ଜଣେ କିରାଣୀ କହିଲା; କିନ୍ତୁ ଏଥିରେ ଦୁଇଟି ରାଜ୍ୟର ବନ୍ଧୁତା ଜଡ଼ିତ । ସେ ଆଫିସର କିଛିଦୂର ଆଗେଇ ଯାଇ ପ୍ରଥମ କିରାଣୀକୁ ଚେତାଇ ଦେଇ କହିଲା ପିଟୋନିୟା ରାଜ୍ୟର ସରକାର ଆମ ଦେଶକୁ କେତେ ପ୍ରକାର ସାହାଯ୍ୟ ଦେଇ ନାହାନ୍ତି କଣ ଏହି ବନ୍ଧୁତାର ଖାତିରରେ ଆମେ କଣ ଜଣେ ମଣିଷର ଜୀବନ ବଳିଦାନ ଦେଇପାରିବା ନାହିଁ ।"

ଅନ୍ୟମାନେ ଏକ ସଙ୍ଗରେ ସ୍ୱର ଉତ୍ତୋଳନ କଲେ "କବି ମରିଯିବା ଦରକାର" ସେଠାରେ ଉପସ୍ଥିତ ସବୁ ଭଦ୍ରଲୋକଙ୍କ ମୁହଁରେ ଏକ ସ୍ୱର "ହାସଦେହ ।"

ଅଣ୍ଡର ସେକ୍ରେଟେରୀ ବଡ଼ବାବୁଙ୍କୁ ଡକାଇ କହିଲେ ଆଜ ସକାଳୁ ପ୍ରଧାନମନ୍ତ୍ରୀ ବିଦେଶ ଗସ୍ତରୁ ଫେରି ଆସିଛନ୍ତି । ଆଜ ୪ଟା ବେଳେ ବୈଦେଶିକ ବିଭାଗ ଏ ଫାଇଲ ତାଙ୍କ ପାଖରେ ପେଶ୍ କରିବ ସେ ଯାହା ନିଷ୍ପତ୍ତି ନେବେ ତାହା ହିଁ ହେବ ଶେଷ ନିଷ୍ପତ୍ତି ।

ସନ୍ଧ୍ୟା ପାଞ୍ଚଟା ବେଳକୁ ଯେତେ ବଡ଼ବାବୁ କବିଙ୍କ ଫାଇଲ ନେଇ ତାଙ୍କ ପାଖକୁ ଆସିଲେ ଏବଂ କହିଲେ ଶୁଣ ବଡ଼ ଖୁସି ଖବର "ପ୍ରଧାନମନ୍ତ୍ରୀ ଏ ଗଛଟିକୁ କାଟିବାକୁ ହୁକୁମ ଜାରି କରିଛନ୍ତି ଏବଂ ଏହି ଘଟଣାରେ ସେ ଆନ୍ତଃରାଜ୍ୟ ସମ୍ବନ୍ଧୀୟ ସମସ୍ତ ଭଲମନ୍ଦକୁ ନିଜ ମୁଣ୍ଡ ଉପରକୁ ନେଇଛନ୍ତି । କାଲି ସକାଳୁ ଏ ଗଛ କଟାଯିବ ଏବଂ ତମକୁ ସମସ୍ତ ପ୍ରକାର ସଂକଟରୁ ଉଧାର କରି ଦିଆଯିବ ।" "ଆଜ ତମ ଫାଇଲ ପୁରା ହୋଇଗଲା ।"

କିନ୍ତୁ କବିଙ୍କ ହାତ ଥଣ୍ଡା ଥିଲା । ଆଖି ଯୋଡ଼ିକ ନିର୍ଜୀବ ଥିଲେ । ପିମ୍ପୁଡ଼ି-ମାନଙ୍କ ଏକ ଲମ୍ବା ଧାଡ଼ି ତାଙ୍କ ମୁହଁ ପାଖରେ ଲାଗି ରହିଥିଲା ।

ତାଙ୍କ ଜୀବନର ଫାଇଲ ମଧ୍ୟ ସମ୍ପୂର୍ଣ୍ଣ ହୋଇ ଯାଇଥିଲା ।



# କାଠ କଣ୍ଢେଇ

କାଠ କଣ୍ଢେଇର ଆବିର୍ଭାବ ପ୍ରଥମେ କିପରି ଓ କେଉଁଠାରୁ ହେଲା ତାହା କେହି ଜାଣନ୍ତିନି । ଏହାର ପଛରେ ଏକ କାହାଣୀ ଅଛି ।

ବହୁତ ପୁରୁଣାକାଳର କଥା । ଜଣେ ରାଜାର ଗୋଟିଏ ରାଣୀ ଥିଲେ । ଦୁଇଜଣ ବଡ଼ ଆରାମରେ ସୁଖରେ କାଳ କାଟୁଥିଲେ ଏବଂ ରାଜ୍ୟର ହାଲଚାଲ କଥା ବୁଝୁଥିଲେ । ରାଜା ରାଣୀଙ୍କୁ ଖୁବ୍ ଭଲ ପାଉଥିଲେ । କିନ୍ତୁ ଯେତେବେଳେ ବିବାହର ଦୁଇବର୍ଷ ପୂରିଗଲା ଏବଂ ରାଣୀଙ୍କର କୋଳକୁ କୌଣସି ସନ୍ତାନ ନ ଆସିଲା, ରାଜଗୁରୁ ରାଜାଙ୍କୁ ଉପଦେଶ ଦେଲେ "ଆପଣ ଦ୍ୱିତୀୟ ବିବାହ କରନ୍ତୁ କାରଣ ଆପଣ ରାଜା ଏବଂ ରାଜାଙ୍କର ଘରେ ଯଦି ରାଜକୁମାର ନ ହୁଅନ୍ତି ତେବେ ରାଜ୍ୟ ଭବିଷ୍ୟତରେ କିପରି ଚାଲିବ ଏବଂ ଯଦି ରାଜ୍ୟ ନ ଚାଲେ; ତେବେ ପ୍ରଜାମାନେ ଦୁଃଖ କରିବେ । ରାଜା ଏହା ଶୁଣି ପ୍ରଜାମାନଙ୍କର ଦୁଃଖ ଲାଘବ କରିବା ନିମନ୍ତେ, ଦ୍ୱିତୀୟ ବିବାହ କଲେ ଏବଂ ଦ୍ୱିତୀୟ ରାଣୀଙ୍କ ପାଇଁ ଦ୍ୱିତୀୟ ମହଲ ତିଆରି କଲେ ଏବଂ ଦ୍ୱିତୀୟ ମହଲ ତିଆରି କରିବା ପାଇଁ ପ୍ରଜାମାନଙ୍କ ଉପରେ ଟିକସ ଲାଗୁକଲେ ଏବଂ ପ୍ରଜାମାନେ ଖୁସିହୋଇ ଏଥିରେ ସମ୍ମତି ଦେଲେ କାରଣ ସେମାନେ ଚାହୁଁଥିଲେ ରାଜାଙ୍କର ପୁତ୍ର ସନ୍ତାନ ହେଉ ଏବଂ ରାଜ୍ୟ ବଂଚିଯାଉ ।

କିନ୍ତୁ ଯେତେବେଳେ ଦ୍ୱିତୀୟ ବିବାହର ମଧ୍ୟ ଦୁଇବର୍ଷ ପୂରିଗଲା ଏବଂ ଦ୍ୱିତୀୟ ରାଣୀଙ୍କ କୋଳକୁ କୌଣସି ସନ୍ତାନ ଆସିଲା ନାହିଁ ରାଜଗୁରୁ ରାଜାଙ୍କୁ ଉପଦେଶ ଦେଲେ ରାଜା ' ଆପଣଙ୍କୁ ପୁଣି ତୃତୀୟଥର ପାଇଁ ବିବାହ କରିବାକୁ ପଡ଼ିବ କାରଣ ଯେଉଁ ରାଜାର ଘରେ ସନ୍ତାନ ନଥାନ୍ତି ପ୍ରଜମାନେ ତାଙ୍କୁ ନଂପୁସକ ବୋଲି ବିଚାର କରନ୍ତି । ଏଣୁ ରାଜା ନିଜର ପୁରୁଷତ୍ୱ ଦେଖାଇବାକୁ ଯାଇ ତୃତୀୟଥର ପାଇଁ ବିବାହ କଲେ ଏବଂ ତୃତୀୟ ରାଣୀଙ୍କ ପାଇଁ ତୃତୀୟ ମହଲ ତିଆରି କଲେ ଏବଂ ଲୋକଙ୍କ ଉପରେ ତୃତୀୟଥର ପାଇଁ ଟିକସ ବସାଇଲେ । ଲୋକମାନେ

ମଧ୍ୟ ଖୁସିହୋଇ ଏ ଟିକସର ଭାର ବହନ କଲେ ଏବଂ ରାଜାଙ୍କର ସନ୍ତାନ ହେବା ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କଲେ ।

କିନ୍ତୁ ଯେତେବେଳେ ତୃତୀୟ ରାଣୀଙ୍କ ଗର୍ଭରୁ ଦୁଇବର୍ଷ ପର୍ଯ୍ୟନ୍ତ କୌଣସି ସନ୍ତାନ ଜାତହେଲା ନାହିଁ ରାଜଗୁରୁ କହିଲେ ରାଜା ! ଆପଣ ଚତୁର୍ଥ ବିବାହ କରନ୍ତୁ, କାରଣ ରାଜା ଯଦି ନିଃସନ୍ତାନ ହୁଅନ୍ତି; ତେବେ ତାଙ୍କୁ ଦୁର୍ବଳ ବୋଲି ବିଚାରି ଅନ୍ୟ ରାଜ୍ୟର ରାଜାମାନେ ତାଙ୍କ ରାଜ୍ୟ ଉପରେ ଆକ୍ରମଣ ଆରମ୍ଭ କରିଦେବେ ଏବଂ ଯେତେବେଳେ ରାଜ୍ୟ ଉପରେ ଅନ୍ୟ ପ୍ରଜାମାନେ ଆକ୍ରମଣ କରିବେ ତେବେ ବହୁତ ପ୍ରଜା ଲଢ଼େଇରେ ମରିଯିବେ । ବହୁତ ସ୍ତ୍ରୀଲୋକ ବିଧବା ହେବେ । ଏଣୁ ଆପଣଙ୍କ ପାଇଁ ଚତୁର୍ଥ ବିବାହ ଏକାନ୍ତ ଆବଶ୍ୟକ ।

ଏଣୁ ରାଜ୍ୟକୁ ବାହାର ଆକ୍ରମଣରୁ ରକ୍ଷାକରିବାକୁ ଯାଇ ରାଜା ଚତୁର୍ଥ ବିବାହ କରିନେଲେ । ଚତୁର୍ଥ ରାଣୀଙ୍କ ପାଇଁ ରାଜ୍ୟରେ ଚତୁର୍ଥ ମହଲ ନିର୍ମାଣ କଲେ ଏବଂ ଏହି ମହଲ ନିର୍ମାଣ କରି ଲୋକଙ୍କ ଉପରେ ଚତୁର୍ଥଥର ପାଇଁ ଟିକସ ବସାଇଲେ । କିନ୍ତୁ ଏଥର ମଧ୍ୟ କୌଣସି ଫଳ ଫଳିଲା ନାହିଁ । ଏଣୁ ରାଜା ପଞ୍ଚମଥର ପାଇଁ ବିବାହ କଲେ । ପଞ୍ଚମ ମହଲ ତିଆରି କଲେ ଏବଂ ଲୋକଙ୍କ ଉପରେ ପଞ୍ଚମ ଥର ପାଇଁ ଟିକସ ଲଗାଇଲେ କିନ୍ତୁ ଯେତେବେଳେ ପଞ୍ଚମ ରାଣୀଙ୍କ ଗର୍ଭରୁ ମଧ୍ୟ କୌଣସି ସନ୍ତାନ ଲାଭର ଆଶା ଦେଖାଗଲା ନାହିଁ, ରାଜା ଷଷ୍ଠଥର ପାଇଁ ବିବାହକଲେ, ଷଷ୍ଠଥର ପାଇଁ ମହଲ ନିର୍ମାଣ କଲେ ଏବଂ ଷଷ୍ଠଥର ପାଇଁ ପ୍ରଜାଙ୍କ ଉପରେ ଟିକସ ଲଗାଇଲେ ।

କିନ୍ତୁ ଏଥର ମଧ୍ୟ କୌଣସି ସନ୍ତାନ ଜାତହେଲା ନାହିଁ ।

ଏଥର ରାଜଗୁରୁ ରାଜାଙ୍କୁ ରାଗିଯାଇ କହିଲେ ଏହାପରେ ଆପଣ ଆଉଥରେ ମାତ୍ର ବିବାହ କରିପାରନ୍ତି କାରଣ ଜଣେ ରାଜା କେବଳ ସାତଥର ବିବାହ କରି-ପାରେ ଏବଂ ଜଣେ ରାଜାଙ୍କର ସବୁଠୁ ବେଶି ସାତ ରାଣୀ ହୋଇ ପାରନ୍ତି । ଏଣୁ ଆପଣ ଆଠଥର ପାଇଁ ବିବାହ କରି ପାରିବେ ନାହିଁ କାରଣ କୌଣସି ରାଜାଙ୍କର ଆଠରାଣୀ ଥିବାର ଦେଖି ନାହିଁ । ଆଉ ଯଦି ଏହି ସପ୍ତମ ରାଣୀଙ୍କ ଗର୍ଭରୁ କୌଣସି ସନ୍ତାନ ଜାତ ନହେଲା ତେବେ ରାଜ୍ୟଭାର ଆପଣଙ୍କୁ ହସ୍ତାନ୍ତର କରିବାକୁ ପଡ଼ିବ କାରଣ ଆପଣଙ୍କର ପ୍ରଜାମାନେ ଟିକସ ଦେଇ ଦେଇ ଅତିଷ୍ଠ ହୋଇ ପଡ଼ିଲେଣି ।

ଏବେ ମୁଁ କଣ କରିବି ରାଜଗୁରୁ ? ମତେ ଯଦି କୌଣସି ଉପାୟ ବତାଇଦଅନ୍ତୁ ଯେଉଁଥିରେ କି ମୋ ଘରେ ରାଜକୁମାର ଜନ୍ମନେବ ଏବଂ ମୋ ହାତରୁ ରାଜ୍ୟ ଶାସନ ଚାଲିଯିବ ନାହିଁ ।

ରାଜଗୁରୁ କହିଲେ "ଆପଣ ଆସନ୍ତା ମାସ ସାତ ତାରିଖ ସକାଳ ୭ଟା ବେଳେ ବାହାରକୁ ଯିବେ ଏବଂ ବାହାରେ ସାତ କଦମ ଚାଲିବାପରେ ଶେଷ କଦମ ଯେଉଁ ସ୍ତ୍ରୀଲୋକ ଆପଣଙ୍କୁ ଭେଟିବ ତା ମୁହଁକୁ ଆପଣ ସାତ ଚଟକଣା ମାରିବେ ଏବଂ ତାକୁ ଧରି ସାତଥର ବୁଲିଯାଇ ବିବାହ କରିନେବେ । ଯଦି ଭଗବାନ ଚାହିଁବେ ତେବେ ଆପଣଙ୍କ ଘର ନିଶ୍ଚୟ ପୁରିଉଠିବ ।

ରାଜା ଠିକ୍ ସେହିପରି କଲେ । ତା'ପର ମାସ ଠିକ୍ ସାତ ତାରିଖ ଦିନ ସକାଳ ସାତଟାବେଳେ ଉଠି ସେ ସହର ବାହାରକୁ ବୁଲିଗଲେ ଏବଂ ସାତ କଦମ ଚାଲିଲାପରେ ଯେ ଜଣେ ସ୍ତ୍ରୀଲୋକକୁ ଭେଟିଲେ ଯେ କି ଜଙ୍ଗଲରୁ କାଠ ଆଣି ମୁଣ୍ଡରେ ଥୋଇ ସହରକୁ ବିକିବା ପାଇଁ ନେଇଗଲା । ରାଜା ଦୂରରୁ ଅଟକାଇ ତା କାଠ ସବୁକୁ ତଳେ ପକାଇଦେଲେ । ତା ମୁହଁକୁ ସାତ ଚଟକଣା ମାରି ତାକୁ ଧରି ମହଲକୁ ଆଣିଲେ ଏବଂ ତା ସହ ଚାରିପଟେ ସାତଥର ବୁଲି ତାକୁ ବିବାହ କରିନେଲେ । ଠିକ୍ ସାତମାସ ପରେ ପୁତ୍ର ସନ୍ତାନଟିଏ ଜନ୍ମଲାଭ କଲା ।

ସନ୍ତାନଟି ବହୁତ ଦୁର୍ବଳ ଥିଲା ଏବଂ ଯେହେତୁ ସେ ରାଜକୁମାର ଥିଲା ଏଣୁ ରାଜ୍ୟସାରା ଘରେ ଘରେ ମିଠାଇ ବଣ୍ଟାଗଲା, ଲୋକମାନେ ଆନନ୍ଦିତ ହେଲେ, ଦୀପ ଜଳାଇଲେ ଏବଂ ବାଣ, ଫୋଟକା ଇତ୍ୟାଦି ଫୁଟାଇଲେ । ଲୋକମାନଙ୍କ ଉପରେ ଏ ଦୀପ ଜଳାଇବା ପାଇଁ ଆଉ ବାଣ ଫୁଟାଇବା ପାଇଁ ଟିକସ ମଧ୍ୟ ଲଗାଗଲା ଏବଂ ରାଜକୁମାରଙ୍କ ପାଇଁ ନୂଆ ପ୍ରାସାଦଟିଏ ମଧ୍ୟ ନିର୍ମାଣ କରାଗଲା ।

ଯେତେବେଳେ ରାଜକୁମାରଙ୍କୁ ସାତଦିନ ହୋଇଗଲା ସେତେବେଳେ ତାଙ୍କର ଜନ୍ମପତ୍ରିକା ତିଆରି କରିବା ପାଇଁ ଦେଶର ପ୍ରଖ୍ୟାତ ଜ୍ୟୋତିଷଙ୍କୁ ଡକାଗଲା ଏବଂ ତାଙ୍କୁ କୁହାଗଲା ଯେ ସେ ଗ୍ରହ ନକ୍ଷତ୍ରଙ୍କ ସ୍ଥିତି ଦେଖି ରାଜକୁମାରଙ୍କ ଜନ୍ମ ପତ୍ରିକା ତିଆରି କରନ୍ତୁ ।

ରାଜଜ୍ୟୋତିଷୀ ଜନ୍ମ ପତ୍ରିକା ତିଆରିକଲେ । ରାଜଗୁରୁଙ୍କ ସାଙ୍ଗରେ ପରାମର୍ଶ କଲେ । ତାପରେ ରାଜାଙ୍କୁ କହିଲେ "ଏହି ପୁତ୍ର ବଡ଼ ଭାଗ୍ୟବାନ ଅଟେ । କିନ୍ତୁ ଯଦି ଏ ତାର ମାତାଙ୍କ ସାଙ୍ଗରେ ରହେ ତେବେ ଏ ପୁତ୍ର ସାତ ମାସରେ ମରିଯିବ ।"

ରାଜା କହିଲେ "ଯେଉଁ ରାଣୀ ଏ ପୁତ୍ରକୁ ଜନ୍ମ ଦେଇଛନ୍ତି ମୁଁ ତାଙ୍କଠୁ ଏ ପୁତ୍ରଠାରୁ ଅଲଗା ରଖିବି କିପରି ?"

ଜ୍ୟୋତିଷ ରାଜାଙ୍କୁ ଉତ୍ତରଦେଲେ "ଏ ରାଣୀର ଗର୍ଭ ଆପଣଙ୍କ ପ୍ରତି ଆଦୌ ମଙ୍ଗଳ ନୁହେଁ, ଏ ରାଣୀ ଯଦି ଆପଣଙ୍କ ସାଙ୍ଗରେ ମହଲରେ ରହେ; ତେବେ ଆପଣଙ୍କ ଜୀବନ ପ୍ରତି ମଧ୍ୟ ବିପଦ ଅଛି ।"

ରାଜଗୁରୁ ରାଜାଙ୍କୁ କହିଲେ "ଏହାଛଡ଼ା ଏ ରାଣୀ ତ କୌଣସି ରାଜ ବଂଶୀୟ ନୁହନ୍ତି ଏକ ମାମୁଲି କାଠ ବିକବା ସ୍ତ୍ରୀଲୋକ, ଆପଣଙ୍କୁ ପୁତ୍ର ମିଳିବାର ଥିଲା ମିଳିଗଲା ଏଣୁ ଆପଣ ପୁତ୍ରକୁ ନିଜ ପାଖରେ ରଖନ୍ତୁ ଏବଂ ଏ ସ୍ତ୍ରୀଲୋକକୁ ଦେଶାନ୍ତର କରିଦିଅନ୍ତୁ । ଧର୍ମ ମଧ୍ୟ ରହିବ ଏବଂ ମାନସମ୍ମାନ ମଧ୍ୟ ରହିବ ।"

ଏଣୁ ରାଜା ରାଜଗୁରୁ ଏବଂ ଜ୍ୟୋତିଷଙ୍କ କଥା ମାନି ତାଙ୍କ ସପ୍ତମ ରାଣୀଙ୍କୁ ରାଜ୍ୟରୁ ବାହାର କରିଦେଲେ, ଏବଂ ପୁତ୍ରକୁ ନିଜ ପାଖରେ ପ୍ରାସାଦରେ ରଖିଲେ । ଆଉ ବିଚରା ରାଣୀ କାନ୍ଦି କାନ୍ଦି ଜଙ୍ଗଲକୁ ଚାଲିଗଲା ଏବଂ ଜଙ୍ଗଲ ମଧ୍ୟରେ ଗୋଟିଏ ନଦୀ କୂଳରେ ଥିବା କଦଳୀ ବଣରେ କାନ୍ଦି କାନ୍ଦି ଜୀବନ ବିତାଇବାରେ ଲାଗିଲା ।

ନିଜ ପୁତ୍ରକଥା ଭାବି ଭାବି ସେ ପାଗଳପ୍ରାୟ ହୋଇଗଲା ଏବଂ ନଖାଇ ନପିଇ ଶୁଖି କଣ୍ଠା ହୋଇଗଲା । ତାର ଦେହଟି ଆସ୍ତେ ଆସ୍ତେ ଶୁଖି ଶୁଖି ଗୋଟିଏ ଶୁଖିଲା କାଠପରି ହୋଇଗଲା ଏବଂ କିଛିଦିନ ପରେ ମଲା କାଠଖଣ୍ଡ ପରି ପଡ଼ିରହିଲା । ତାକୁ ସେ ସମୟରେ ଯଦି କିଏ ପାଖରୁ ଦେଖେ ତ ଭାବିବ ଯେପରି କାଠର ସ୍ତ୍ରୀଲୋକଟିଏ ଠିଆହୋଇଛି, ଯାହା ଭିତରେ କୌଣସି ରସ ନାହିଁ । ଏହାପରେ ତାର ଲାଶ୍ କାଠର ଏକ ଅଦ୍ଭୁତ ଖଣ୍ଡ ହୋଇ ରହିଗଲା ।

ତାର ମରିବାର ତିନିଦିନ ପରେ ଗୋଟେ କାଠ କଟାଳିର ଚିକଟାଳି ଶବ୍ଦ ସେ ଜଙ୍ଗଲରୁ ଶୁଣାଗଲା । ଯେତେବେଳେ ସେ କଦଳୀ ବଣରେ ସେ ଅପୂର୍ବ କାଠ ଖଣ୍ଡଟିକୁ ଦେଖିଲା ସେ ଆଶ୍ଚର୍ଯ୍ୟ ହୋଇ ଚିତ୍କାରକଲା ଏବଂ ଯେହେତୁ ତାର ଶୁଖିଲା କାଠ ଦରକାର ଥିଲା ସେ ସେହି କାଠଖଣ୍ଡକୁ ଅନ୍ୟ କାଠଖଣ୍ଡ ସହ ମିଶାଇ ମୁଣ୍ଡରେ ଥୋଇ ନିଜ ଘରକୁ ଫେରିଆସିଲା ।

ଘରକୁ ଫେରିଆସି ସେ ଏହି କାଠଖଣ୍ଡଟିକୁ ଅନ୍ୟ କାଠ ସବୁରୁ ଅଲଗା କରି ଘରର ଗୋଟିଏ କୋଣରେ ରଖିଦେଲା ଏବଂ ଅନ୍ୟ କାଠ ସବୁକୁ ବଡ଼ା ବାନ୍ଧି ବଜାରକୁ ବିକିବା ପାଇଁ ନେଇଗଲା ।

ଯେତେବେଳେ ସେ ସହରରେ ପହଞ୍ଚିଲା ସେତେବେଳେ ସେ ଦେଖିଲା ସାରା ସହରରେ ଦେବ ଶୋକର ଛାୟା ଖେଳିଯାଇଛି । ଆଜି କାହାର ଘରେ ଚୁଲି

ଜଳ ନାହିଁ, କାରଣ ବୁଝିବାରେ ଜଣାଗଲା ଯେ ନବଜନ୍ମିତ ପୁତ୍ର ସନ୍ତାନ କାନ୍ଦୁଛି ଏବଂ କୌଣସି ଉପାୟରେ ତାର କାନ୍ଦ ବନ୍ଦହେଉ ନାହିଁ । ସହରରୁ ଏବଂ ସହର ବାହାରରୁ ବହୁତ ବଡ଼ ବଡ଼ ହାକିମ, ବୈଦ୍ୟ, ଡାକ୍ତର, ଜ୍ଞାନୀ ଲୋକମାନଙ୍କୁ ଅଣାଇ ତାର ବହୁ ଚିକିତ୍ସାସତ୍ତ୍ୱେ ତାର କାନ୍ଦ ବନ୍ଦହେଉ ନାହିଁ । ସେ ସବୁବେଳେ କାନ୍ଦୁଛି ଏବଂ ତାର ଆଖିରୁ ଲୁହ କୌଣସିପ୍ରକାରେ ବନ୍ଦହେଉ ନାହିଁ । ରାଜକୁମାରଙ୍କ ଚିକିତ୍ସା ପାଇଁ ଲୋକଙ୍କ ଉପରେ ପୁଣି ଟିକସ ବସାଯାଇଛି । ବୈଦ୍ୟମାନେ କହନ୍ତି ଯେ ଯଦି ଯଲଦି ରାଜକୁମାରଙ୍କର କାନ୍ଦଣା ବନ୍ଦ ନହୁଏ; ତେବେ କିଛିଦିନ ପରେ ସେ କାନ୍ଦି କାନ୍ଦି ମରିଯିବେ । ରାଜକୁମାରଙ୍କ ମନ ପରିବର୍ତ୍ତନ ପାଇଁ ସାରା ଦୁନିଆର ଖେଳନା ଇତ୍ୟାଦି ତାଙ୍କ ପାଖରେ ରଖାଯାଇଛି । ବିଭିନ୍ନ ପ୍ରକାରର ଗୀତସବୁ ତାଙ୍କୁ ଶୁଣାହେଉଛି ଯେପରିକି ତାଙ୍କର ମନରେ ପରିବର୍ତ୍ତନ ଘଟେ । ବିଭିନ୍ନ କିସମର ମିଠାଇ ଏବଂ ଖେଳନା ଦ୍ୱାରା ତାଙ୍କ ମନ ପରିବର୍ତ୍ତନ କରାଇବା ପାଇଁ ଚେଷ୍ଟା କରାଯାଉଛି କିନ୍ତୁ କୌଣସି ଫଳ ଫଳୁ ନାହିଁ ।

ରାଜ୍ୟରେ ଢେଙ୍ଗୁରା ପିଟାଇ ଜଣାଇଦେଲେ ଯେ, ଯେ କେହି ରାଜପୁତ୍ରଙ୍କର କାନ୍ଦଣା ବନ୍ଦ କରିଦେଲେ ତାଙ୍କୁ ରାଜ୍ୟର ଅଧେ ଦାନ କରି ଦିଆହେବ । ଆଉ ଯଦି କାନ୍ଦଣା ବନ୍ଦ କରିବାରେ ସେ ଅସମର୍ଥ ହୁଏ; ତେବେ ତାର ମୁଣ୍ଡ କାଟହେବ । ଏହି ପୁରସ୍କାର ଶୁଣି ରାଜ୍ୟରୁ ଏବଂ ରାଜ୍ୟ ବାହାରୁ ବହୁ ପ୍ରତିଷ୍ଠିତ ଲୋକେ ଆସି ରାଜପୁତ୍ରର ମନ ପରିବର୍ତ୍ତନ ପାଇଁ ଚେଷ୍ଟା କଲେ । କିନ୍ତୁ ଅସଫଳ ହେଲେ । ସେମାନଙ୍କର ମୁଣ୍ଡ କଟାଯାଇ ସହରର ବାହାର ଦରଜାରେ ଲଟକାଇ ଦିଆଗଲା । ଏହି ଘଟଣାବଳୀରୁ ରାଜପୁତ୍ରଙ୍କ ପ୍ରତି ପ୍ରଜାମାନଙ୍କର ଅକାଟ ସ୍ନେହ ପରିସ୍ଫୁଟ ହେଉଥିଲା ।

ସେଦିନ ବିଚରା କାଠକଟାଳି ମଧ୍ୟ ଶୋକରେ ରହିଲା କାରଣ ତାଠାରୁ କେହି କାଠ ରଖିଲେ ନାହିଁ କାରଣ କାହାର ଚୁଲି ସେଦିନ ଜଳିଲା ନାହିଁ । ସବୁ ଲୋକେ ସେଦିନ ଶୋକ ଉପାସରେ ବ୍ରତ କରି ରାଜପୁତ୍ରଙ୍କର ଦ୍ରୁତ ଆରୋଗ୍ୟ କାମନା କରୁଥିଲେ ।

ତା' ପରଦିନ ମଧ୍ୟ କାଠକଟାଳିର କାଠ ବିକ୍ରି ହେଲା ନାହିଁ । ସେ ବଡ଼ ଦୁଃଖ ମନରେ ଘରକୁ ଆସିଲା । ମୁଣ୍ଡ ଉପରୁ କାଠ ବୋଝାକୁ ଘରର ଗୋଟେ କୋଣରେ ଫୋପାଡ଼ିଦେଲା ଏବଂ ଭୂଇଁ ଉପରେ ସେଇ ଉପାସରେ ବ୍ୟସ୍ତ ହୋଇ ଶୋଇପଡ଼ିଲା । ଶୋଇଥିବା ସମୟରେ ସେ ରାଜପୁତ୍ରର କାନ୍ଦ କିପରି ବନ୍ଦହେବ ସେଇ କଥା ଚିନ୍ତା କରୁଥିଲା ।

ଶୋଇ ଶୋଇ କାଠକଟାଳ ଗୋଟିଏ ସ୍ୱପ୍ନ ଦେଖିଲା । ସ୍ୱପ୍ନରେ ଦେଖିଲା ଯେ ଘର କୋଣରେ ପଡ଼ିଥିବା ସେହି ଫୋପଡ଼ା ହୋଇଥିବା କାଠଖଣ୍ଡରୁ ଗୋଟିଏ ଦୁର୍ବଳ ସ୍ତ୍ରୀଲୋକଟିଏ ବାହାରିଆସି ଆଖିରୁ ଲୁହ ପୋଛି ପୋଛି ଆସି ତା ଆଗରେ ଠିଆହେଲା ଏବଂ ତାକୁ କହିଲା "ଆରେ ଶୁଣ, ତୋ ଘରେ ସେ କୋଣରେ ଯେଉଁ କାଠଖଣ୍ଡଟି ପଡ଼ିଛି ତାକୁ ଆଣି ତୁ ମଝିରୁ ଚିରିଦେ, ମଝି ଅଂଶରୁ ଗୋଟିଏ ଲାଲ କଲିଜା ଭଳି କାଠ ଖଣ୍ଡଟିଏ ମିଳିବ । ସେଇ ଗ୍ରେଟିଆ କାଠଖଣ୍ଡିରୁ ତୁ ଗୋଟିଏ କଣ୍ଢେଇଟିଏ ତିଆରି କରିଦେ । ସେଇ କଣ୍ଢେଇର ଆକାର ଏତେ ଗ୍ରେଟ ହୋଇଥିବ ଯେପରି ଗୋଟିଏ ଗ୍ରେଟପିଲାର ହାତର ମୁଠିଭିତରେ ରହିଯିବ । ଆଜ ରାତି ମଧ୍ୟରେ ତୁ କାଠଚିର ଏ କଲିଜାର କାଠ ଟୁକୁଡ଼ାରୁ କଣ୍ଢେଇଟିଏ ତିଆରିକରିଦେ ଏବଂ ଏହାକୁ ନେଇ ରାଜାଙ୍କୁ ଦେଖା କରି ରାଜପୁତ୍ରଙ୍କ ହାତକୁ ଏହି କଣ୍ଢେଇଟି ଦେଇ-ଦେବୁ । ତୁରନ୍ତ ରାଜପୁତ୍ରର କାନ୍ଦଣା ବନ୍ଦହୋଇଯିବ ଏବଂ ତୁ ରାଜ୍ୟର ଅର୍ଦ୍ଧାଂଶ ପୁରସ୍କାର ରୂପେ ପାଇଯିବୁ ।" ଏତିକି କହି ସେ ଦୁର୍ବଳ ସ୍ତ୍ରୀଲୋକଟି କାନ୍ଦି କାନ୍ଦି ପୁଣି ସେଇ କାଠଖଣ୍ଡ ଭିତରେ ପଶିଗଲା ଏବଂ କାଠକଟାଳର ସ୍ୱପ୍ନ ଭଂଗହେଲା । ସେ ତୁରନ୍ତ ଯାଇ ଘର କୋଣରେ ପଡ଼ିଥିବା କାଠ ଖଣ୍ଡଟିକୁ ଆଣି ତାକୁ ମଝିରୁ ଚିରି ସେଥିରୁ ସତକୁ ସତ ଗୋଟିଏ ମଣିଷର କଲିଜା ଭଳି ଲାଲ ରଙ୍ଗର କାଠର ଟୁକୁଡ଼ା ଖଣ୍ଡିଏ ପାଇଲା । ସାରା ରାତି ଲାଗିପଡ଼ି ସେ ଗୋଟିଏ କଣ୍ଢେଇ ତିଆରି କଲା । ସ୍ତ୍ରୀଲୋକଟି ତାକୁ ଯେମିତି ଭାବେ କଣ୍ଢେଇଟି ତିଆରି କରିବାପାଇଁ କହିଥିଲା ସେ ସେହିପରି ଭାବରେ କଣ୍ଢେଇଟିକୁ ତିଆରି କରି ରାଜାଙ୍କୁ ଦେଖା କରିବା ପାଇଁ ବାହାରିଲା ।

ରାଜା ତାକୁ ଦେଖି ହସି ପକାଇଲେ, କହିଲେ "ଏତେ ବଡ଼ ବଡ଼ ଲୋକ ହାରି ମାନି ଗଲେଣି ଆଉ ତୁ କ'ଣ ରାଜପୁତ୍ରର କାନ୍ଦଣା ବନ୍ଦ କରିଦେଇ ପାରିବୁ ? କାହିଁକି ଶୁଖିଲାଟାରେ ନିଜ ପ୍ରାଣବଳି ଦେବୁ ?"

କାଠକଟାଳ ଉତ୍ତରରେ କେବଳ ଏତିକି କହିଲା "ଦୟାକରି ମୋତେ ରାଜକୁମାରଙ୍କୁ ସାକ୍ଷାତ କରିବାକୁ ଅନୁମତି ଦିଅନ୍ତୁ ଏବଂ ଏହି କଣ୍ଢେଇଟିକୁ ତାକୁ ଦେବାପାଇଁ ଅନୁମତି ଦିଅନ୍ତୁ, ଯଦି ରାଜକୁମାରଙ୍କ କାନ୍ଦଣା ବନ୍ଦ ନ ହେଲା; ତେବେ ମୋର ମୁଣ୍ଡକାଟ ହେବ ।"

ରାଜା କାଠକଟାଳକୁ ରାଜକୁମାରଙ୍କର ଶୟନକକ୍ଷକୁ ନେଇଗଲେ । କାଠକଟାଳ ଲକ୍ଷ୍ୟକଲା, ରାଜକୁମାରଙ୍କର ଚେହେରା ଆଉ ସେ ସ୍ୱପ୍ନରେ ଦେଖିଥିବା ସ୍ତ୍ରୀଲୋକର ଚେହେରା ମଧ୍ୟରେ ଅପୂର୍ବ ସାମଞ୍ଜସ୍ୟ ରହିଛି ।

କାଠକଣ୍ଟାଳି ରାଜପୁତ୍ରଙ୍କ ପାଖକୁ ଯାଇ ସେଇ କଣ୍ଢେଇଟିକୁ ରାଜକୁମାରଙ୍କ ହାତରେ ଦେଲା । ରାଜକୁମାର କଣ୍ଢେଇଟିକୁ ହାତରେ ହଲେଇ ତଳେ ପକାଇ-ଦେଲ । କାଠକଣ୍ଟାଳି ବଚରା ସତରେ ଡରିଗଲା ।

କାଠ କଣ୍ଟାଳିଟି ନିରାଶ ହୋଇ କଣ୍ଢେଇଟିକୁ ତଳୁ ଉଠାଇନେଇ ନିଜ ହାତରେ ହଲାଇ ବଜାଇବାରେ ଲାଗିଲା ।

କଣ୍ଢେଇଟିର ବାଜଣା ଶୁଣି ରାଜକୁମାର ଚୁପ୍‌ହୋଇଗଲା ଏବଂ ଚକିତ ନୟନରେ କଣ୍ଢେଇଟିକୁ ଚାହିଁବାରେ ଲାଗିଲା । କାଠ କଣ୍ଟାଳି କଣ୍ଢେଇଟିକୁ ହଲାଇ ଜୋରରେ ବଜାଇବାରେ ଲାଗିଲା ଏବଂ ବଜାଇ ବଜାଇ ରାଜକୁମାର ପାଖକୁ ଲାଗିଆସିଲା । ରାଜକୁମାର ଚୁପ୍ ହୋଇଯାଇଥିଲା । କାଠ କଣ୍ଟାଳି ରାଜକୁମାର ହାତରେ କଣ୍ଢେଇଟିକୁ ଦେଲା । ଏଥର ରାଜକୁମାର ନିଜ ହାତରେ କଣ୍ଢେଇଟିକୁ ନେଇ ଜୋରରେ ବଜାଇବାକୁ ଲାଗିଲା । କଣ୍ଢେଇଟି ମଧ୍ୟ ସତେଯେପରି ହସି-ଉଠିଲା ।

ରାଜକୁମାର କଣ୍ଢେଇଟିର ହସ ଦେଖି ନିଜେ ମଧ୍ୟ ହସିପକାଇଲା ।

ସେଇଦିନଠାରୁ ଛୋଟ ପିଲାମାନେ ଯେତେବେଳେ କାଠ କଣ୍ଢେଇ ହାତରେ ଧରି ବଜାନ୍ତି ସେମାନେ ଖୁସିରେ ନାଚିଉଠନ୍ତି କାରଣ ସେଇ କଣ୍ଢେଇର ଶବ୍ଦରେ ସେମାନେ ନିଜ ମାଆର ହୃଦସ୍ବର ଡାକ ଶୁଣିପାରନ୍ତି ଯାହାକି ଦୁନିଆର ସବୁଠାରୁ ମିଠା ।



# ନୋ ଏବଂ ୟେସ୍

ଶେଷ ମହାଯୁଦ୍ଧ ୨୦୭୫ ମସିହାରେ ହୋଇଥିଲା । ଏହାର ପରିଣାମରେ ପୃଥିବୀ ପ୍ରାୟ ଜନଶୂନ୍ୟ ହୋଇଗଲା, କେବଳ ତିନିଜଣଙ୍କୁ ଛାଡ଼ି......

(୧) ପ୍ରଫେସର ମେହତାବ

(୨) ଗୋଟିଏ ଦ୍ୱାଦଶବର୍ଷର ବାଳକ

(୩) ଛଅ ମାସର ଫ୍ରାନ୍ସି ଝିଅଟିଏ ଯାହାର ନାଁ ଥିଲା ମିସ୍ ନୋ ।

ପ୍ରଫେସର ମେହତାବ ସେ ସମୟର ସବୁଠୁ ବେଶି ଜ୍ଞାନୀ ଲୋକଥିଲେ । ସେ ଜଣେ ବଡ଼ ବୈଜ୍ଞାନିକ ଥିଲେ । ସେ ଫୋଟୋନ୍ ରକେଟ ଆବିଷ୍କାର କରିଥିଲେ, ଯାହାର ଗତି ବିଜୁଳିର ଗତି ସହିତ ସମାନ ଥିଲା ସେ ଆକାଶୀୟ ତତ୍ତ୍ୱରୁ ଅମ୍ଳଜାନ, ଉଦ୍‌ଯାନ ଏବଂ ନାଇଟ୍ରୋଜେନ ଆବିଷ୍କାର କରି, ସେଥିରୁ ପରମାଣୁ ବୋମାର ଉଦ୍ଭାବନ କରିଥିଲେ । ମାଧ୍ୟାକର୍ଷଣ ଶକ୍ତି ମଧ୍ୟ ତାଙ୍କର ଆବିଷ୍କାର ।

ଶ୍ୱେତ କିରଣ ମଧ୍ୟ ସେ ଆବିଷ୍କାର କରିଥିଲେ ଯାହାକି ସୂର୍ଯ୍ୟଙ୍କର କିରଣଠାରୁ ମଧ୍ୟ ଅଲଗା । ଏହା ଦିନରେ କମ୍ବା ରାତିରେ ଆଖିକୁ ଦିଶେ ନାହିଁ କମ୍ବା ଇନ୍ଦ୍ରଧନୁର କୌଣସି ରଙ୍ଗ ସହିତ ଏହା ମେଳ ଖାଏ ନାହିଁ । ଏହି ଶ୍ୱେତ କିରଣକୁ ଧରି ରଖିବାରେ ଏକ୍ସ-ରେ, ରାଡ଼ାର, ଅଣୁବୀକ୍ଷଣ ଯନ୍ତ୍ର, ରେଡ଼ିଓ ଏବଂ ଇଲେକ୍ଟ୍ରୋନିକ୍ସ ଯନ୍ତ୍ରମାନେ ମଧ୍ୟ ଫେଲ ହୋଇଲେ । ଶେଷରେ ପ୍ରଫେସର ମେହତାବ ଏକ ଅଣୁ ମିଟର ଯନ୍ତ୍ର ସାହାଯ୍ୟରେ ଏହି କିରଣର ସ୍ଥିତି ସମ୍ବନ୍ଧରେ ଦୁନିଆକୁ ଜଣାଇଦେଲେ ଏବଂ ଏହି କିରଣର ବିଶେଷତ୍ୱକୁ ମଧ୍ୟ ଦେଶବାସୀଙ୍କ ଆଗରେ ପ୍ରମାଣ କରିଦେଲେ ।

ପ୍ରଫେସର ପ୍ରମାଣ କରିଦେଲେ ଯେ ମଣିଷ ହୃଦୟରେ ପରସ୍ପର ପ୍ରତି ଯେଉଁ ହିଂସା ଭାବର ଉଦ୍ରେକ ହେଉଛି ତାହାର କାରଣ ହେଲା ଏହି ଶ୍ୱେତକିରଣ

ଯାହାକ ସୂର୍ଯ୍ୟଙ୍କ ଦେହରୁ ବାହାରୁଛ ଏବଂ ମଣିଷର ଶିର ପ୍ରଶିରରେ ରକ୍ତ ସହିତ ମିଶି ଏହି ହିଂସା ଏବଂ ଘୃଣା ଭାବର ଉଦ୍ରେକ କରୁଛ ।

କିନ୍ତୁ ପ୍ରଫେସର ସାହେବଙ୍କ ଏହି କିରଣର କ୍ଷତିକାରକ ଗୁଣ ସବୁର ପ୍ରତିକାର କେହି କରି ପାରିଲେ ନାହିଁ; ଫଳତଃ ୨୧୭୫ ମସିହାର ମହାଯୁଦ୍ଧର ଶେଷରେ କେବଳ ତିନିଜଣ ବ୍ୟକ୍ତି ହିଁ ଏ ଧରାପୃଷ୍ଠରେ ବଞ୍ଚିରହିଲେ (ଯାହାଙ୍କ ନାଁ ମୁଁ ପୂର୍ବରୁ ଉଲ୍ଲେଖ କରିଛି); ଅର୍ଥାତ୍ ପ୍ରଫେସର ମେହତାବ, ମିସ୍‌ନୋ ଏବଂ ଆଉ ଗୋଟିଏ ଗ୍ଲେଟପିଲା ଯାହାର ନାଁ ଥିଲା ମିଷ୍ଟର ସ୍ନେହ୍ ।

ପ୍ରଫେସର ମେହତାବ ଏ ପୃଥିବୀ ଛାଡ଼ିଦେଲେ ଏବଂ ଉଡ଼ି ଉଡ଼ି ସେ ଭୂ-ପୃଷ୍ଠରୁ ସୌରମଣ୍ଡଳ ଦେଇ ଆକାଶ ଗଙ୍ଗାର ଅପର ପାର୍ଶ୍ୱରେ ଥିବା ଣ୍ଡ୍ରୋମେଡା ଗ୍ରହରେ ପହଞ୍ଚିଗଲେ, ଣ୍ଡ୍ରୋମେଡା ଗ୍ରହକୁ ଦୁଇ ସୂର୍ଯ୍ୟ ଆଲୋକ ଦେଉଥିଲେ, ଆଉ ସେ ଆଲୋକର ପ୍ରଖରଣ ବେଶି ନଥିଲା କାରଣ ସେ ସୂର୍ଯ୍ୟଙ୍କ ବୟସ ଯୌବନ ପାର ହୋଇଯାଇଥିଲା, ଏହାଛଡ଼ା ଏ ଦୁଇ ସୂର୍ଯ୍ୟଙ୍କଠାରୁ ନିର୍ଗତ ରଶ୍ମି ଭିନ୍ନ ପ୍ରକାରର ଥିଲା ।

ଗୋଟିଏ ସୂର୍ଯ୍ୟରୁ ଅସ୍ତଗାମୀ ସୂର୍ଯ୍ୟଙ୍କପରି ଶ୍ୱେତ କିରଣ ବାହାରୁଥିଲା ଯାହାକି ସାଧାରଣ ଆଖିକୁ ଦେଖାଯାଉ ନଥିଲା ଏବଂ ତାହାର ପ୍ରଭାବ ଅନ୍ୟ ସୂର୍ଯ୍ୟଟିକୁ ଗୌଣ କରି ଦେଉଥିଲା । ଫଳରେ ଏହି ଗ୍ରହର ଜଳବାୟୁ ଅତ୍ୟନ୍ତ ସମଶୀତୋଷ୍ଣ ଥିଲା । ଏହାର ପ୍ରଭାବରେ ହୃଦୟରେ କୌଣସି କୋଧଭାବ ଜାତ-ହେଉ ନଥିଲା, କୌଣସି ଘୃଣାଭାବ ମଧ୍ୟ ଜାତହେଉ ନଥିଲା, ଉଷ୍ଣତା କମ୍, ଥଣ୍ଡା କମ୍ ଏବଂ ମାଧ୍ୟାକର୍ଷଣ ଶକ୍ତିର ପ୍ରଭାବ ମଧ୍ୟ କମ୍ ଥିଲା ଏଣୁ ଯେତେବେଳେ ପିଲା ଦୁଇଟି ଗ୍ରହରେ ପହଞ୍ଚି ପୁଣି ଗ୍ରହର କକ୍ଷରୁ ବାହାରିବେ; ତେବେ ନିଶ୍ଚିତଭାବେ କେତେ ହଜାର ଫୁଟ ଉପରକୁ ଛିଟିକି ପଡ଼ିବେ ।

ଆପଣ ଚିନ୍ତା କରନ୍ତୁ ଯଦି ଏହି ଗ୍ରହ ପୃଥିବୀ ହୋଇଥାନ୍ତା; ତେବେ ପିଲା ଦୁଇଟି ପୃଥିବୀପୃଷ୍ଠରୁ ଉଚ୍ଛୁଳିଯାଇ ମାଉଣ୍ଟ ଏଭରେଷ୍ଟ ଉପରେ ପଡ଼ିଥାନ୍ତେ । ଶ୍ୱେତ କିରଣ ଏପରିଭାବେ ଧୀରେ ଧୀରେ ବାହାରୁଥିଲା ଯେ ମିସ୍‌ନୋ ଏହି କିରଣକୁ ସୂତାରେ ଗୁନ୍ଥି ସୁନ୍ଦର ଗରମ ପୋଷାକ ତିଆରି କରୁଥିଲା ଏବଂ ମାଷ୍ଟର ସ୍ନେହ୍ ଯଦି କୌଣସି କଥାରେ ହସିଦେଉଥିଲା ସେ ତେବେ ତା ହସ ଏବଂ ଏ କିରଣର ଥଣ୍ଡା ହାଓ୍ୱାରେ ଆଇସ୍‌କ୍ରିମ୍ ପାଲଟିଯାଇ ଉଠୁଥିଲେ ।

ଦନସାସ୍ତ ଏହି ଗ୍ରହରେ ଦୁଇଟିଯାକ ପିଲା ହସି ହସି କରି ନିଜ ହାତରୁ ତିଆରି ଆଇସ୍‌କ୍ରିମ ଖାଉଥିଲେ ଯଦିଓ ଏହା ମାଉଣ୍ଟ ଏଭରେଷ୍ଟଠାରୁ ଉଚ୍ଚଥିଲା କିନ୍ତୁ ତଥାପି ଏତେ ନରମ ଥିଲା ଯେ ଟିକିଏ ଆଙ୍ଗୁଳିରେ ଚିପିଦେଲେ ଏହା ପୃଥିବୀ ଦେହରେ ଚିପିହୋଇ ଯାଉଥିଲା ଏବଂ ପୁଣି ଧୀରେ ଧୀରେ ଉପରକୁ ଉଠିଥିଲା । ଏହା ମାଷ୍ଟର ମ୍ୟେସ୍ ନୋଙ୍କର ଅତି ସୁନ୍ଦର ଖେଳଥିଲା ।

ପ୍ରଫେସର ମେହ୍ନତାବ୍ ବହୁ ଚିନ୍ତାକରି ଏହି ଗ୍ରହଟିକୁ ବାଛିଥିଲେ । ତାଙ୍କୁ ଜଣାଥିଲା ଯେ ହଜାର ହଜାର ବର୍ଷ ଧରି ଯେଉଁ ଘୃଣାଭାବ ମନୁଷ୍ୟର ଅସ୍ଥି କଙ୍କାଳରେ ଜମିଯାଇଛି ତାହାର ରଙ୍ଗ ଦିନେ ବଦଳିବ ଏବଂ ମଣିଷର ସ୍ୱଭାବରେ ପରିବର୍ତ୍ତନ ଘଟିବ, ଯେହେତୁ ସମୟ କମ୍ ଥିଲା ଏବଂ ସେହି ସମୟ ଭିତରେ ଏହି ଶ୍ୱେତ କିରଣର ଉଚିତ୍ ବ୍ୟବହାର ହୋଇପାରି ନଥିଲା, ଏଥିପାଇଁ ସେ ଧୀରେ ଧୀରେ ନିଜର ବଡ଼ ଫୋଟୋନ୍ ରକେଟ୍ ଦ୍ୱାରା ସୌରମଣ୍ଡଳର ବାହାରପଟେ ଉଡ଼ି ସେହି ଗ୍ରହର ସନ୍ଧାନରେ ରହିଲେ ଯାହାଦ୍ୱାରା କି ମନୁଷ୍ୟର ହୃଦୟରୁ ଜମିରହିଥିବା ଘୃଣାଭାବ ଧୀରେ ଧୀରେ ଲୋପପାଇବ ଏବଂ ପ୍ରେମଭାବ ଉତ୍ପନ୍ନ ହେବ । ସୌଭାଗ୍ୟକ୍ରମେ ତାଙ୍କୁ ଖୁବ୍ ଜଲଦି ସେହି ଗ୍ରହର ସନ୍ଧାନ ମିଳିଗଲା ଏବଂ ସେ ଆସନ୍ତା ଦଶବର୍ଷ ମଧ୍ୟରେ ମନୁଷ୍ୟର ଜ୍ଞାନ, କଳା ଏବଂ ସଭ୍ୟତା ଏବଂ ସଂସ୍କୃତିର ବହୁମୂଲ୍ୟ ଅନୁଭବକୁ ନେଇ ଖୁବ୍ ଯତ୍ନର ସହ ସେହି ଗ୍ରହ ଭିତରେ ଯୋଡ଼ି ଦିଆଯାଇ-ପାରିବ ଏବଂ ଯେତେବେଳେ ଏହି ବ୍ୟବସ୍ଥା ସମ୍ପୂର୍ଣ୍ଣ ହୋଇଯିବ ଏବଂ ଯେତେ-ବେଳେ ତାଙ୍କୁ ଏ ବିଷୟରେ ପୂରା ବିଶ୍ୱାସ ଆସିଯିବ ଯେ ଡ୍ରୋମେଡା ଗ୍ରହରେ ମନୁଷ୍ୟ ଜାତି ନିଜକୁ ମୃତ୍ୟୁଠାରୁ ମଧ୍ୟ ଦୂରେଇ ରଖିପାରିବ, ସେତେବେଳେ ପ୍ରଫେସର ମେହ୍ନତାବ ପୃଥିବୀପୃଷ୍ଠକୁ ଓହ୍ଲାଇଆସି ଦେଶବାସୀଙ୍କୁ ଖବର ଦେବେ ଯେ ସେ ଏପରି ଏକ ଗ୍ରହ ଆବିଷ୍କାର କରିଛନ୍ତି ଯେ ସେଥିରେ ମନୁଷ୍ୟ ନିଜର ସଭ୍ୟତା ଏବଂ ସଂସ୍କୃତିକୁ ସୁରକ୍ଷିତ କରି ବାସ କରି ପାରିବ ।

କିନ୍ତୁ ଦୁର୍ଭାଗ୍ୟର କଥା ଯେତେବେଳେ ପ୍ରଫେସର ମେହ୍ନତାବ ଡ୍ରୋମେଡା ଗ୍ରହରୁ ଫେରି ପୃଥିବୀ ବକ୍ଷରେ ପହଞ୍ଚିଲେ ସେତେବେଳକୁ ଶେଷ ମହାଯୁଦ୍ଧର ଅବସାନ ଘଟିଥିଲା ଏବଂ ତାର ଭୟାବହ ପରିଣାମରେ ମଣିଷ ଜାତି ଏବଂ ତାର ସଭ୍ୟତା ମଧ୍ୟ ଲୋପ ପାଇଥିଲା । ପ୍ରଫେସରଙ୍କ ଏହି ନୂତନ ଆବିଷ୍କାରକୁ ଗ୍ରହଣ-କରିବାପାଇଁ କେହି ବଞ୍ଚି ନଥିଲେ । ବଡ଼ କଷ୍ଟରେ ପ୍ରଫେସର ମେହ୍ନତାବଙ୍କୁ ଏହି ପିଲା ଦୁଇଟି ମିଳିଗଲେ ଏବଂ ସେମାନଙ୍କୁ ନେଇ ସେ ନିଜର ଫୋଟନ୍ ରକେଟ୍‌ରେ ବସି ସେଇ ନୂଆ ଗ୍ରହକୁ ଉଡ଼ିଗଲେ ।

ଡୋମେଦା ଗ୍ରହରେ ପହଞ୍ଚି ସେ କୌଣସିମତେ ଆଣିଥିବା ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କୁ ବଞ୍ଚେଇବାରେ ଲାଗିଗଲେ ଏବଂ ସେମାନଙ୍କୁ ଧୀରେ ଧୀରେ ମନୁଷ୍ୟ ଜାତିର ସଭ୍ୟତା ଏବଂ ସଂସ୍କୃତି ବିଷୟ ସମ୍ୟକ ଧାରଣା ଦେବାକୁ ଆରମ୍ଭ କଲେ, କାରଣ ଏମାନେ ହିଁ ପୃଥିବୀପୃଷ୍ଠରେ ମନୁଷ୍ୟ ଜାତିକୁ ଆଗେଇ ନେବାରେ ସାହାଯ୍ୟ କରିବେ । ଯଦି ବା ଏ ଦୁହିଁଙ୍କ ଭିତରୁ କିଏ ଜଣେ ମରିଯିବ; ତେବେ ପୁଣି ସମସ୍ୟା ଦେଖାଦେବ ଯାହାକି ମନୁଷ୍ୟ ଜାତିକୁ ବଂଶବୃଦ୍ଧି ପାଇଁ ଧ୍ୱଂସର ଗହ୍ୱରକୁ ଠେଲିଦେବ ।

ଏଥିପାଇଁ ପ୍ରଫେସର ମେହନ୍ତାବ ଏ ପିଲା ଦୁଇଟିଙ୍କୁ ଖୁବ ଭଲଭାବେ ଲାଳନପାଳନ କରି ଉପଯୁକ୍ତ ଶିକ୍ଷାଦୀକ୍ଷା ଦେବାପାଇଁ ବିଶେଷ ନଜର ଦେଲେ । କାରଣ ସେ ଜାଣିଥିଲେ ଯେ ତାଙ୍କ ପରେ ସେଇ ଦୁଇଜଣ ହିଁ ଏ ଧରାପୃଷ୍ଠରେ ମନୁଷ୍ୟ ଜାତିର ପ୍ରତିନିଧିତ୍ୱ କରିବେ ଯାହାକି ଏ ଧରାପୃଷ୍ଠରୁ ଲୋପପାଇବା ଅବସ୍ଥାକୁ ଅାସିଯାଇଥିଲା । ଏଣୁ ସେ ନିଜର ସବୁଯାକ ଜ୍ଞାନ, ଗାରିମା ଏହି ଦୁଇ ପିଲାଙ୍କୁ ଶିଖାଇ ଦେବାରେ ଲାଗିଲେ ।

ବିଜ୍ଞାନ, ଇତିହାସ, ସାହିତ୍ୟ, ଦର୍ଶନଶାସ୍ତ୍ର, ଅର୍ଥଶାସ୍ତ୍ର ଇତ୍ୟାଦି କୌଣସି ଶିକ୍ଷା ସେ ଛାଡ଼ିଲେ ନାହିଁ । ସ୍ୱରବର୍ଣ୍ଣ, ବ୍ୟଞ୍ଜନବର୍ଣ୍ଣଠାରୁ ଆରମ୍ଭ କରି ସେକ୍ସପିଅର କାଳିଦାସ, ତୁଲସୀ ଦାସ ଏବଂ ଗାଲିବ ପର୍ଯ୍ୟନ୍ତ — ବିଜ୍ଞାନରେ ସେଇ ପଢ଼ିବାଠାରୁ ଆରମ୍ଭ କରି ଚନ୍ଦ୍ରକୁ ଉଡ଼ିବା ପର୍ଯ୍ୟନ୍ତ ଅର୍ଥାତ୍ ନ୍ୟୁଟନଙ୍କଠାରୁ ଆରମ୍ଭ କରି ଆଇନ୍‌ଷ୍ଟାଇନ୍ ଏବଂ ଶେଷକୁ ପ୍ରଫେସର ମେହନ୍ତାବଙ୍କ ପର୍ଯ୍ୟନ୍ତ ଜ୍ଞାନ ସେଇ ଦୁଇଟି ଶ୍ରେଷ୍ଠ ପିଲାଙ୍କୁ କେଇଟା ବର୍ଷ ମଧ୍ୟରେ ଦେବାକୁ ପଡ଼ିଲା କାରଣ ଏହିସବୁ ଜ୍ଞାନ ସେମାନେ ପୃଥିବୀରେ ବିତରଣ କରିବେ ।

ସମସ୍ତ କମ୍ ଥିଲା ଏବଂ ସେ ଦିନକୁ ଦିନ ବୁଢ଼ା ହୋଇ ଯାଉଥିଲେ, ସେହି ଛଅମାସର ଶ୍ରେଷ୍ଠ ଝିଅଟି ବର୍ତ୍ତମାନ ଷୋହଳ ବର୍ଷର ସୁନ୍ଦରୀ ତରୁଣୀରେ ପରିଣତ ହୋଇଯାଇଥିଲା । ଆଖି ଦୁଇଟି ଟଣା ଟଣା, ଘନ କେଶରାଶିରେ ଦେହ ଅପୂର୍ବ ସୁନ୍ଦର ଦେଖାଯାଉଥିଲା, ତାର ଲାଲ ଓଠ ଏବଂ ମନଲୋଭା ହସ ଖୁବ୍ ଆକର୍ଷଣୀୟ ଦେଖାଯାଉଥିଲା । ଆଉ ଯେ ଶ୍ରେଷ୍ଠ ପୁଅପିଲାଟା ବର୍ତ୍ତମାନ ବଡ଼ହୋଇ ଏକୋଇଶି ବର୍ଷରେ ପଦାର୍ପଣ କରିଥିଲା । ସେ ଛ'ଫୁଟ ଉଚ୍ଚା ହୋଇଯାଇଥିଲା, ତାର ଛାତି ଖୁବ୍ ଚଉଡ଼ାଥିଲା ଏବଂ ବାଳ ଖୁବ୍ କହରା ଥିଲା ଏବ ଚେହେରା ରାଜପୁତ୍ରପରି ଦେଖାଯାଉଥିଲା ।

ଦୁଇଜଣଙ୍କର ଶିକ୍ଷାଦୀକ୍ଷା ପ୍ରାୟ ଏକ ସାଥୀରେ ହିଁ ହେଉଥିଲା ଏବଂ ଦୁହେଁଯାକ ପ୍ରଫେସରଙ୍କ ଆଖିରେ ସମାନ ଥିଲେ ଏବଂ ପ୍ରଫେସର ସେ ଦୁହିଁଙ୍କୁ ଖୁବ୍ ଭଲପାଉଥିଲେ । ଇଲେକଟ୍ରୋନିକ ଯନ୍ତ୍ରମାନଙ୍କଦ୍ୱାରା ସେ ଦୁହିଁଙ୍କୁ ପ୍ରତ୍ୟେକଦିନ ମାନବଜାତିର ଜ୍ଞାନ ସମ୍ପର୍କରେ ଶିକ୍ଷାଦେଉଥିଲେ । ଦୁହେଁଯାକ ହୋସିୟାର ଏବଂ ବୁଦ୍ଧିମାନ ଥିଲେ ଏବଂ ବର୍ତ୍ତମାନ ସୁଦ୍ଧା ପନ୍ଦରବର୍ଷର ଜ୍ଞାନ ଆହରଣ କରି ସାରିଥିଲେ । ସେମାନଙ୍କର ମସ୍ତିଷ୍କ ପରିପୁଷ୍ଟ ହୋଇସାଇଥିଲା । ଏହି ପନ୍ଦରବର୍ଷର ଶିକ୍ଷାଦ୍ୱାରା ତାଙ୍କର ମସ୍ତିଷ୍କ ପନ୍ଦର ଶତାବ୍ଦି ପର୍ଯ୍ୟନ୍ତ ପହଞ୍ଚିଥିଲା ।

ପ୍ରଫେସର ଖୁବ୍ ଖୁସିଥିଲେ, ଆଉ କିଛି ବର୍ଷପରେ ଏହି ଦୁଇଜଣ ବିଂଶ ଶତାବ୍ଦିର ଜ୍ଞାନ ମଧ୍ୟ ଆହରଣ କରିପିବେ, ଏଥର ତାଙ୍କ ଶିକ୍ଷା ସମ୍ପୂର୍ଣ୍ଣ ହେବ, ହଜାରବର୍ଷ ଧରି ଯେଉଁ ଜ୍ଞାନକୁ ମଣିଷ ଅନୁସନ୍ଧାନ କରି ଏକାଠି କରିଥିଲା, ତାହା ଅତ୍ୟନ୍ତ ବେକାର ହିବ ନାହିଁ, ନୂତନ ଜ୍ଞାନ ଆହରଣ କରି ମନୁଷ୍ୟଜାତି ଉନ୍ନତି ପଥରେ ଆଗେଇ ଯିବ ।

କିନ୍ତୁ ମଣିଷଜାତିର ସୃଷ୍ଟି ଆରମ୍ଭ ହେବ କେଉଁଠାରୁ .....?

ବର୍ତ୍ତମାନ ଏ ଗ୍ରହ ଉପରେ ତିନିଜଣ ବ୍ୟକ୍ତିଥିଲେ—ଜ୍ଞାନ ଓ ବୁଦ୍ଧିରେ ସମସ୍ତେ ଏକ ସୂତାରେ ବନ୍ଧାହୋଇଥିଲେ; କିନ୍ତୁ ସେମାନଙ୍କ ଦେହରେ ମେଳ ନଥିଲା କି ହୃଦୟରେ ପ୍ରେମ ନଥିଲା ଯାହାକି ଗୋଟିଏ ପରିବାରରେ ଥାଏ, ଗୋଟିଏ ଘରେ ଥାଏ । ସେଇ ଘର ଯାହାକୁ କି ପ୍ରଫେସର ମେହେତାବ ପୃଥିବୀ ଉପରେ ହଜାଇଦେଇ ଆସିଥିଲେ ଏବଂ ବର୍ତ୍ତମାନ ଏ ପିଲା ଦୁଇଟିଙ୍କପାଇଁ ଏ ଘର ଶବ୍ଦଟି ନିହାତି ଅପରିଚିତ ଥିଲା ।

ଆଶ୍ଚର୍ଯ୍ୟର କଥା, ମିସ୍ ନୋ ଏବଂ ମିଷ୍ଟର ଯେମ୍‌ଙ୍କର ଲାଳନ ପାଳନ ଏକା ସାଙ୍ଗରେ ହେଉଥିଲା, ଦୁହେଁଯାକ ଏକା ସାଙ୍ଗରେ ବଢ଼ୁଥିଲେ, ଦୁହେଁଯାକ ଜଣେ ଜଣକୁ ପ୍ରେମ କରିବାକୁ ବାଧ୍ୟଥିଲେ କାରଣ ଏହି ଦୁଇଜଣଙ୍କ ଛଡ଼ା ଏଠାରେ ଆଉ କେଏ ନଥିଲା, ପ୍ରଫେସର ଅବଶ୍ୟ ଥିଲେ; କିନ୍ତୁ ସେ ତାଙ୍କର ବାପପରି ଏବଂ ସବୁପରି ତାଙ୍କରି ଗୁରୁ ଏବଂ ପାଳନକର୍ତ୍ତା । କେମିତି ହେଲେ ତାଙ୍କ ଦୁହିଁଙ୍କ ମନ ଭିତରେ ପ୍ରେମର ଭାବ ଉପୁଜାଇ ହେବ ଏ କଥା ହିଁ ପ୍ରଫେସର ଚିନ୍ତା କରୁଥିଲେ କାରଣ ଏ ଦୁହିଁଙ୍କର ପ୍ରେମ ହିଁ ମନୁଷ୍ୟଜାତିକୁ ଲୋପ ପାଇଯାଉଥିବା ଅବସ୍ଥାରୁ ଉଦ୍ଧାର କରିବ । ପ୍ରଫେସର ସେମାନଙ୍କୁ ଅନେକ ବୁଝାଇଲେ; କିନ୍ତୁ

ସେମାନେ ବର୍ତ୍ତମାନ ଏବେ ଛୋଟପିଲା ହୋଇ ରହି ନଥିଲେ ଯେ ଏ କଥା ବୁଝିପାରିବେ ନାହିଁ । ସେମାନେ ଖୁବ୍ ଭଲଭାବେ ଜାଣିଥିଲେ ଯେ ସେମାନେ ଯଦି ଶୀଘ୍ର ପରସ୍ପରକୁ ବିବାହ ନ କରନ୍ତି; ତେବେ ପରିଣାମ ଭୟାବହ ହେବ । ପୃଥିବୀ-ପୃଷ୍ଠରୁ ଏକ ଶୃଙ୍ଖଳିତ, ସଭ୍ୟ ମାନବଜାତି ସର୍ବଦାପାଇଁ ଲୋପ ପାଇଯିବ । କିନ୍ତୁ ଦୁଃଖର ବିଷୟ ଯେ, ସେମାନେ ଏକାଠି ରହୁଥିଲେ, ଏକାଠି ଶିକ୍ଷା ପାଉଥିଲେ, ଏକାଠି ବୁଲୁଥିଲେ କିନ୍ତୁ ସେମାନେ ପରସ୍ପରକୁ ପ୍ରେମ କରୁ ନଥିଲେ ।

ମାଷ୍ଟର ସ୍ନେପର କହିବା ଥିଲା ଯେ ମିସ୍ ନୋ କୁଆଡ଼େ ବହୁତ ଗୋଷ୍ଠି ଥିଲା ଏବଂ ଏବେ ଗୋଷ୍ଠି ଝିଅ ତାକୁ ଦରକାର ନଥିଲା ।

ମିସ୍ ନୋ କହୁଥିଲା ଯେ ମାଷ୍ଟର ସ୍ନେପ୍‌ର ରଙ୍ଗ କଳାଥିଲା ଏବଂ ଯଦିଓ ଏ କଳା ରଙ୍ଗକୁ ସେ ନାପସନ୍ଦ କରୁ ନଥିଲା; କିନ୍ତୁ ତାର ଏ ଘନ କୁଞ୍ଚିକୁଞ୍ଚିଆ ବାଳପ୍ରତି ମିସ୍ ନୋର ବଡ଼ ଘୃଣାଥିଲା, ସେ କହୁଥିଲା "ମୋତେ ଗୋଟିଏ ସିଧା ବାଳଥିବା ପୁଅପିଲା ଦରକାର ।" ମାଷ୍ଟର ସ୍ନେପ୍ କହୁଥିଲା, ମୋତେ ଗୋଟିଏ କାଳି ଝିଅଟିଏ ଦରକାର, ଶ୍ୟାମଳ ହେଲେ ବି ଚଳିବ, ଝିଅଟି ପ୍ରଥମେ ଖୁବ ଜିଦ କରୁଥିବ; କିନ୍ତୁ ଶେଷରେ ହାରିଯାଇ ଆତ୍ମସମର୍ପଣ କରୁଥିବ ।"

ସେ ଏକଥା ଶୁଣି ରାଗିଯାଇ କହିବ "ବାଃ, ମୁଁ କାହିଁକି ହାରିବି, ପୁଣି ତୁମଠୁ ହାରିବି ? କଥା ଧୀରେ ଧୀରେ ବଢ଼ିଗଲେ । ସ୍ନେପର ବିଜ୍ଞାନ, ଗଣିତ ଏବଂ ଆଲଜେବ୍ରାରେ ଅଧିକ ଥିଲା, ନୋକୁ ସାହିତ୍ୟ, ଦର୍ଶନ ଇତ୍ୟାଦି ଖୁବ୍ ଭଲ-ଲାଗୁଥିଲା, ସେ ବହୁତ ଗପିପାରୁଥିଲା ଏବଂ ତାର ଗପ ରକେଟ୍ ପର୍ଯ୍ୟନ୍ତ ଚାଲିଯାଉଥିଲା ।

ନୋ କହିଲା "ତୁମେ କଣ ଭାବୁଛ ମୁଁ ତୁମପରି ଏକ ନିରସ ପଣ୍ଡିତ, ଆଲଜେବ୍ରା, ବିଜ୍ଞାନ ଜାଣିଥିବା ଲୋକଟିକୁ ବାହାହେବି ..."

"ସ୍ନେପ ।" ସ୍ନେପ୍ କହିଲା ।

"ନୋ ... ।" ମିସ୍ ନୋ କହିଲା "ମୋତେ ଏମିତିଆ ପୁଅପିଲା ଦରକାର, ଯିଏ ମୋପରି ନରମ, ଦାର୍ଶନିକପରି ସୁନେଲି ଏବଂ ରକେଟପରି ତେଜ୍ ଥିବ, ଏମିତି ବୁଦ୍ଧିଙ୍କପରି ହୋଇନଥିବ ଯିଏ କେବଳ ଫର୍ମୁଲା କଥା ଚିନ୍ତା-କରୁଥିବ ।"

"କିନ୍ତୁ ଏପରି ପୁଅପିଲା ଆସିବ ବା କୁଆଡ଼ୁ .... ? ପ୍ରଫେସର ମେହଭାବ ବ୍ୟସ୍ତହୋଇ ମିସ୍ ନୋଙ୍କୁ ପଚାରନ୍ତି ବର୍ତ୍ତମାନ ମନୁଷ୍ୟଜାତି ଭିତରେ ତୁମେ ଦୁହେଁ ହିଁ ତ କେବଳ ଅବଶିଷ୍ଟ ରହିଗଲ । ମୁଁ କହୁଛି ତମେ ଦୁହେଁ ବାହା ହୋଇଯାଅ । ଯଦି ତମ ବିବାହର କୋଡ଼ିଏ ବର୍ଷ ଭିତରେ ଷୋହଳ ପିଲା ହୁଅନ୍ତି ତେବେ··· ପ୍ରଫେସର ମେହଭାବ ହିସାବ କରୁ କରୁ ରହିଗଲେ ।

ମିସ୍ ନୋ ବିରକ୍ତ ହୋଇ କୁହେ "ମୋର ସ୍ୱାମୀ ସାଙ୍ଗରେ ପ୍ରେମ ହୋଇପାରେନା," ଯେତେବେଳେ ସେ ମୋ ହାତକୁ ଛୁଉଁଛି ସେତେବେଳେ ତାର ହାତ ବିଲକୁଲ ଥଣ୍ଡା ଜଣାପଡ଼ୁଛି ଯେତେବେଳେ ଠିକ ବରଫର ଟୁକୁଡ଼ାଟିଏ ମୋର ହାତ ସ୍ପର୍ଶ କରୁଛି, ମତେ ଏମିତି ପିଲା ଦରକାର, ଯାହାର ଦେହର ଉତ୍ତାପ ଜଳୁଥିବା ନିଆଁ ପରି ଥିବ ।" ସ୍ନେପ୍ ଏକଥା ଶୁଣି ମୁହଁ ଖିଙ୍କାରି କହିଲା "ଏମିତିଆ ଅସୁନ୍ଦରୀ ଝିଅ ମଧ୍ୟ ମୋର ଦରକାର ନାହିଁ, ଏହାର ନୀଳଆଖି; ଲାଲ ଓଠ, ଦେହରେ କଲାକାଇ ସବୁ ମତେ ଯେପରି ମନେହୁଏ, ଏହା ଗୋଟିଏ ପଚିଯାଇଥିବା ଫଳଟିଏ । ମୁଁ ଏମିତିଆ ଝିଅକୁ କଦାପି ନକାଳେ ପ୍ରେମ କରି ପାରିବନି ।

ପ୍ରଫେସର ଏ ଦୁହିଁଙ୍କର ଯୁକ୍ତି ଶୁଣି ହତାଶ ହୋଇଯାଆନ୍ତି, ମୁଣ୍ଡ କାଲକୁ ଝିଙ୍କି ପକାନ୍ତି, ତାଙ୍କର ଜୀବନର ସବୁ ପରିଶ୍ରମ ପଣ୍ଡ ହୋଇଗଲା ଯଦିଓ ସେ ଦୁନିଆର ସବୁଠୁ ବେଶି ଜ୍ଞାନୀ, ପଣ୍ଡିତ ବିଜ୍ଞାନୀ ଓ ଗୁଣି ବ୍ୟକ୍ତି ଥିଲେ ।

କିନ୍ତୁ ସେ ପ୍ରେମ ବ୍ୟାପାରରେ ସମ୍ପୂର୍ଣ୍ଣରୂପେ ଅଜ୍ଞ ଥିଲେ ।

ସେ ଯେତେବେଳେ ପଛକୁ ଫେରି ଚାହାନ୍ତି ସେତେବେଳେ ତାଙ୍କର ମନେପଡ଼େ, ତାଙ୍କର ପିଲାଦିନ ଗୋଟିଏ ଗଳି ଭିତରେ କଟିଥିଲା, ତାଙ୍କୁ ପାଳିଥିଲା ଜଣେ ଭିକାରୁଣୀ; କିନ୍ତୁ ତାଙ୍କର ମାଆ କିଏ ଥିଲା ? କିଏ ତାଙ୍କ ବାପା ଥିଲେ । ତାଙ୍କୁ କିଛି ଜଣାନଥିଲା । ଏକଥା ତାଙ୍କର ସେତେବେଳେ ଜାଣିବାର ନଥିଲା, ବହୁ ସମୟ ବୟସବୁ ସେ ନିଜକୁ ନିଜେ ଗଢ଼ିବାପାଇଁ ଶିଖିଥିଲେ, ଜୀବନକୁ ବୁଝିବାପାଇଁ ଶିଖିଥିଲେ । ପିଲାଦିନ ତାଙ୍କର ଯେତରେ ଅନ୍ଧକାରପୂର୍ଣ୍ଣ ଥିଲା, ପ୍ରକୃତର ବିଭିନ୍ନ କଳାକୁ ସେ ସେହି ଗଳି ଭିତରେ ବସି ହିଁ ଆହରଣ କରିଥିଲେ । କିନ୍ତୁ ଦୁନିଆର ସବୁଠୁ ବେଶି ମାନସମ୍ମାନର ଅଧିକାରୀ ହୋଇ ମଧ୍ୟ ସେ ପ୍ରେମର ଅର୍ଥ କଣ ବୁଝିଲେ ନାହିଁ । ଆଉ ଯେଉଁ କାମରେ ସେ ହାତ ଦେଉଥିଲେ ସେ କାମ ଏତେବଡ଼ ଥିଲା ଯେ ସେ ସେଥିରେ ମଜିଯାଇ ପ୍ରେମର ଆବଶ୍ୟକତାରୁ ସମ୍ପୂର୍ଣ୍ଣରୂପେ ଭୁଲିଯା-

ଯାଇଥିଲେ ଏବଂ ସେ ପ୍ରେମ ନାମକ ଶବ୍ଦଠାରୁ ଯଥାସମ୍ଭବ ଦୂରେଇ ରହିଲେ । ଯଦିଓ ସେ ପିଲାଦୁଇଟିଙ୍କୁ ପ୍ରେମ ଶବ୍ଦର ଅର୍ଥ ବୁଝାଇଲେ; କିନ୍ତୁ ଅର୍ଥ ବୁଝିବା ଅଲଗା ଆଉ ପ୍ରେମ କରିବା କଥା ଅଲଗା । ପ୍ରଫେସର ନିଜେ ତ ପ୍ରେମର ଅଥଳ ସାଗରକୁ ପ୍ରବେଶକରିବା ପାଇଁ ସମୟ ପାଇ ନଥିଲେ । ପିଲାମାନେ ବା ବୁଝନ୍ତେ କିପରି ?

ସେତେବେଳେ ସେ ବୁଝିପାରିଲେ ନାହିଁ ଏ ଅବସ୍ଥାରେ କଣ କରାଯାଇପାରେ, ସେ ସ୍ଥିରକଲେ ଆଉଥରେ ପୃଥିବୀ ବୁଲି ଆସିବେ, କାଳେ ତାଙ୍କର ଦୁଇ ପିଲାଙ୍କପରି ଆଉ ଦୁଇଜଣଙ୍କର ସନ୍ଧାନ ଏ ଧ୍ୱଂସପ୍ରାପ୍ତ ପୃଥିବୀରେ ମିଳିଯିବ, ଯେଉଁମାନେ କି ଆଧୁନିକ ସଭ୍ୟତା ଓ ସଂସ୍କୃତି ସହିତ ଆଗାଗୋଡ଼ା ଭାବେ ଜଡ଼ିତଥିବେ, ଯେ ସେମାନଙ୍କୁ ଧରି ଏ ଗ୍ରହକୁ ଫେରିଆସିବେ ଏବଂ ସେମାନଙ୍କ ଦ୍ୱାରା ମନୁଷ୍ୟଜାତିକୁ ଆଗକୁ ବଢ଼େଇବାରେ ସାହାଯ୍ୟ କରିବେ । ଯଦିଓ ଏ ଆଶା କରିବା ତାଙ୍କ ପକ୍ଷରେ ଏକ ବୃଥା ଆସ୍ଫାଳନ ଥିଲା କିନ୍ତୁ ତଥାପି ଥରେ ଚେଷ୍ଟାକଲେ କ୍ଷତି କଣ ?

ପିଲାଦୁଇଟି ପ୍ରଫେସରଙ୍କର ଏ ପ୍ରସ୍ତାବ କଥା ଶୁଣି ବିଶେଷକିଛି ଆଗ୍ରହ ପ୍ରକାଶକଲେ ନାହିଁ । ପ୍ରଫେସର ଦୁହିଁଙ୍କୁ କହିଲେ "ଯଦି ସେମାନେ ଚାହାନ୍ତି ତେବେ ଫୋଟୋନ୍ ରକେଟ୍‌ରେ ତାଙ୍କ ସାଥିରେ ପୃଥିବୀ ଦେଖିବାକୁ ଯାଇପାରନ୍ତି ।"

ଯେମ୍ସ୍ ଏବଂ ନୋ ପୃଥିବୀକୁ ଦେଖିବାପାଇଁ ଜଲଦି ବାହାରିପଡ଼ିଲେ— ପୃଥିବୀ ଦେଖିବାକୁ କେମିତିଆ ହୋଇଥିବ, ସେମାନେ ନିଜ ନିଜ ଭିତରେ କଥାବାର୍ତ୍ତା ହେଲେ । ଯେଉଁଠାରୁ ସେମାନେ ଆସିଥିଲେ, ଯାହାର ଇତିହାସ ଏବଂ ସଭ୍ୟତା ବିଷୟରେ ସେମାନେ ପ୍ରଫେସରଙ୍କଠାରୁ ଆଗରୁ ଶୁଣିଥିଲେ, ଯେଉଁଠାରେ ତାଙ୍କର ବଂଶର ଆରମ୍ଭ ହୋଇଥିଲା, ତାକୁ ଦେଖିବାପାଇଁ ବ୍ୟଗ୍ର ହୋଇପଡ଼ିଲେ । ଟିକିଏ ସେତିକି ନୁହେଁ ପୃଥିବୀ ବିଷୟରେ ସେମାନେ ନିଜ ନିଜ ଭିତରେ ଚର୍ଚ୍ଚା କରିବାକୁ ଆରମ୍ଭ କରିଦେଲେ ।

ଫୋଟନ୍ ରକେଟ୍ ଯେତେବେଳେ ପୃଥିବୀର ବାୟୁମଣ୍ଡଳକୁ ପ୍ରବେଶକଲା, ସେତେବେଳେ ପୃଥିବୀକୁ ଏକ ଘନ କୁହୁଡ଼ିର ଆସ୍ତରଣ ଘୋଡ଼ାଇ ରଖିଥିଲା । ଫୋଟୋନ୍ ରକେଟ୍ ଧୀରେ ଧୀରେ ପୃଥିବୀ ଉପରଦେଇ ଉଡ଼ିବାକୁ ଲାଗିଲା । ପୃଥିବୀ ରଙ୍ଗହୀନ ମନେହେଉଥିଲା; ରଙ୍ଗ ମଇଳା ହୋଇଯାଇଥିଲା, ଗଛଗୁଡ଼ିକୁ

ଜଳଯାଇଥିଲେ, ବାୟୁମଣ୍ଡଳରେ ପୋଡ଼ା ବାରୁଦର ଗନ୍ଧ ପୁରିରହିଥିଲା, ସମସ୍ତ ପୃଥିବୀ ଏକ ମରୁଭୂମିରେ ପରିଣତ ହୋଇଥିଲା, ଜନମାନବର ଚିହ୍ନ ନଥିଲା ।

ପ୍ରଫେସର ମେଦ୍ୱତାବ ନିଜ ଫୋଟାନ୍ ରକେଟ୍‌କୁ ପୃଥିବୀର ସ୍ତରପଟେ କେତେଥର ଘୁରାଇ, ଇଲେକ୍‌ଟ୍ରୋନିକ ଏବଂ ସ୍ୱତନ୍ତ୍ର ଦୂରବୀକ୍ଷଣ ଯନ୍ତ୍ରଦ୍ୱାରା ପୃଥିବୀର ପ୍ରତ୍ୟେକ ଅଂଶକୁ ଅନୁଧ୍ୟାନ କଲେ, କେଉଁଠି ହେଲେ ଜୀବନର ଅଂଶ-ବିଶେଷ ଦେଖିବାକୁ ପାଇଲେ ନାହିଁ, ସାରା ପୃଥିବୀ ନିଶୂନ ଥିଲା, ପୋଖରୀରେ ପାଣିଥିଲା; କିନ୍ତୁ ପିଇବାପାଇଁ ଲୋକ ନଥିଲେ, ବଡ଼ ବଡ଼ ପାହାଡ଼ଥିଲେ କିନ୍ତୁ ଗଛ ନଥିଲା, ଘାଟ ଉପରେ ଘାସସବୁ ଉଠିଥିଲେ କିନ୍ତୁ ତା ଉପରେ ଚାଲିବା ପାଇଁ କେହି ଲୋକ ନଥିଲେ ।

ଫୋଟନ୍ ରକେଟ୍‌ରେ ବୁଲୁ ବୁଲୁ ମଝିରେ ମଝିରେ ସେ ମାଇକ୍‌ରେ ଘୋଷଣା କରନ୍ତି "ଯଦି କିଏ କେଉଁଠି ଅଛନ୍ତି ତେବେ କୁହନ୍ତୁ, ଯଦି କିଏ ମଣିଷ ଏଠି ଅଛନ୍ତି ତେବେ କୁହନ୍ତୁ ? ରକେଟରେ ଥିବା ଇଲେକ୍‌ଟ୍ରୋନିକ ଯନ୍ତ୍ର ସବୁ ମଣିଷର ସ୍ୱରକୁ ଧରିବାକୁ ବ୍ୟାକୁଳ ହେଉଥିଲେ କାଳେ କେଉଁଠି ମଣିଷର ସନ୍ଧାନ ମିଳିଯାଇପାରେ ।

ଏତେ ପରିଶ୍ରମ ବେକାର ହେଲା, କିଛି ଫଳ ମିଳିଲା ନାହିଁ । କେଉଁଠାରୁ ହେଲେ ମଣିଷର କ୍ଷୀଣ ଆବାଜ ମଧ୍ୟ ଶୁଣିବାକୁ ମିଳିଲା ନାହିଁ । ଯଦି ଥାଆନ୍ତା ତେବେ ରକେଟ୍‌ର ଆଣ୍ଟେନା ତାକୁ ନିଶ୍ଚୟ ଧରିପାରିଥାନ୍ତା ।

ରକେଟ୍ ଏକ ନିସ୍ତବ୍ଧ ବାୟୁମଣ୍ଡଳରେ ଦୌଡୁଥିଲା ଚୁପ୍‌ଚାପ ଦୌଡୁଥିଲା, କାଳେ କେଉଁଠି ମଣିଷର ସ୍ୱର ଶବ୍ଦ ମିଳିଯିବ ଏହି ଆଶାରେ । ହାଏରେ ମଣିଷ-ଜାତି, ତମେ ସମସ୍ତେ ଚୁପ୍‌ହୋଇଗଲ ! ତୁମେ ହିଁ ସେହି ଜାତି, ଯିଏ ଭାଷଣ ଦେଉଥିଲ, ଧର୍ମ ନାମରେ ଯୁଦ୍ଧ କରୁଥିଲ, ମାତୃଭୂମି ନାଁରେ ନିଜ ଜୀବନକୁ ବଳି-ଦେଉଥିଲ, ସାମାନ୍ୟ ଅଧିକାର ହାସଲ କରିବାକୁ ପ୍ରାଣଦାନ ଦେଉଥିଲ ! କୁଆଡ଼େ ଗଲ ସେ ମଣିଷ ଜାତି···? ସବୁ ମରିଲେ, ସବୁ ହଜିଗଲେ, ସେମାନଙ୍କର ମୃତ୍ୟୁ ସାଙ୍ଗରେ ଏ ପୃଥିବୀରୁ ଲୋପପାଇଗଲା ଧର୍ମ, କର୍ମ, ଦେଶପ୍ରୀତି ଏବଂ ବଞ୍ଚିବାର ଅଧିକାର ।

ପୋଖରୀରେ ପାଣି କାନ୍ଦୁଥିଲା, ଗଛସବୁ କାନ୍ଦି କାନ୍ଦି ଝାଉଁଳି ପଡ଼ୁଥିଲେ, ପୃଥିବୀ ମଧ୍ୟ କାନ୍ଦି କାନ୍ଦି ନାଲି ପଡ଼ିଯାଉଥିଲା କାରଣ ତା ଉପରେ ବାସକରିବା ପାଇଁ ମଣିଷ କେହି ନଥିଲେ ।

ବହୁତ ଧୀରେ ଧୀରେ ଫୋଟନ୍ ରକେଟ୍ ପୃଥିବୀପୃଷ୍ଠର ଅତି ନିକଟରେ ଉଡ଼ୁଥିଲା, ପ୍ରଫେସର ଉଦାସ ହୋଇ ଯାଇଥିଲେ, ତାଙ୍କର ଉଦାସିଆ କଣ୍ଠରୁ ଏକ କରୁଣ କାହାଣୀ ଶୁଭୁଥିଲା, ସେ ଗୁଣୁ ଗୁଣୁ ହୋଇ କହୁଥିଲେ...।

ଏଠି ନ୍ୟୁୟର୍କର ଗଗନଚୁମ୍ବୀ ପ୍ରାସାଦ ଥିଲେ, ଏଠାରେ ପ୍ୟାରିସ ସହର ଯାହାର ସୁନ୍ଦର ସୁନ୍ଦର ସହର ସବୁ ଥିଲେ, ଏଠାରେ ମସ୍କୋ ମଧ୍ୟ ଥିଲା, ଏଠାରେ ଚେଖୋଫ, ଦସ୍ତୟେଭସ୍କି ଏବଂ ଟଲଷ୍ଟୟଙ୍କ ସମାଧି ମଧ୍ୟ ଥିଲା, ଏଠାରେ ପେକିଂ ଭଳିଆ ସୁନ୍ଦର ଦେଶଥିଲା, ଏଠାରେ ଷ୍ଟୋକହୋମ ଭଳି ସହର ଥିଲା ଯାହାର ସୁନ୍ଦର ସୁନ୍ଦର ବଗିଚା ଥିଲା, ଏଠାରେ ତେହେରାନ ଥିଲା ଯାହାର ସୁନ୍ଦର ସୁନ୍ଦର ଗୋଲାପର ବଗିଚା ସବୁ ଥିଲା, ଏଠାରେ ଲାହୋର ଥିଲା ଯାହାକି ମହଜ ମଜଲିସ୍‌ର ପ୍ରାଣକେନ୍ଦ୍ର ଥିଲା ଏଠାରେ ସବୁ କିଛିଥିଲା; କିନ୍ତୁ ବର୍ତ୍ତମାନ ଏ ଧରିତ୍ରୀ ଶୂନ୍ୟ ଏ ଧରଣୀ ଜନମାନବ ଶୂନ୍ୟ ଏକ ମରୁଭୂମୀ, ସବୁ ସଂସ୍କୃତିର ବିନାଶ ଘଟିଛି ଏ ପୃଥିବୀ ବକ୍ଷରୁ ।

ପ୍ରଫେସରଙ୍କ ଆବାଜ ପୁଣି ଧୀରେ ଧୀରେ ଚୁପହୋଇଗଲା, ସେ ପୁଣି ଏକ ଉଦାସ ଭାବନା ଭିତରେ ହଜିଗଲେ, ଅଚାନକ ତାଙ୍କର ଦୃଷ୍ଟି ଅନ୍ୟଆଡ଼େ ବୁଲିଗଲା, ସେ ଆଶ୍ଚର୍ଯ୍ୟ ହୋଇ ଉଠିପଡ଼ି ତଳକୁ ଅନାଇଲେ ।

ଏଁ - ଏ କଣ ମୁଁ ଦେଖୁଛି—ସ୍ୱପ୍ନ ନା ସତ୍ୟ—ପ୍ରଫେସର ଆଶ୍ଚର୍ଯ୍ୟରେ କହିପକାଇଲେ, ସ୍ନେହ୍ ଏବଂ ନୋ ତାଙ୍କର ପାଟି ଶବ୍ଦ ଶୁଣି ତାଙ୍କ ପାଖକୁ ଆସିଲେ । ସେମାନେ ମଧ୍ୟ ପ୍ରଫେସରଙ୍କ ସାଙ୍ଗରେ ତଳକୁ ଅନାଇଲେ ।

ସତରେ ଗୋଟିଏ ବିରାଟ ପ୍ରାସାଦ ତାଙ୍କ ଦୃଷ୍ଟିଗୋଚର ହେଲା । ପ୍ରାସାଦଟି ଏ ଧ୍ୱଂସମୁଖରୁ କେମିତି ରକ୍ଷାପାଇଥିଲା କେଜାଣି । ସଂପୂର୍ଣ୍ଣ ଅକ୍ଷତ ଅବସ୍ଥାରେ ଠିଆହୋଇଥିଲା । ସେମାନେ ପ୍ରଥମେ ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ । ପୁଣିଥରେ ଆଖିକୁ ଭଲଭାବେ ମଳିକି ତଳକୁ ଅନାଇଲେ । ଏହା ସମ୍ପୂର୍ଣ୍ଣ ସତ୍ୟ ।

ପ୍ରଫେସର ନିଜର ଫୋଟନ୍ ରକେଟ୍‌କୁ ଧୀରେ ଧୀରେ ସେଇ ପ୍ରାସାଦ ପାଖରେ ଓହ୍ଲାଇଦେଲେ, ତିନିଜଣଯାକ ସେଇ ପ୍ରାସାଦ ଆଡ଼କୁ ଧୀରେ ଧୀରେ ଆଗେଇଗଲେ । ସେ ଗୋଟିକ ଥିଲା ଏ ପୃଥିବୀର ଏକମାତ୍ର ସମ୍ବଳ ଯାହାକି ଧ୍ୱଂସ-ମୁଖରୁ ଉଦ୍ଧାରପାଇ ଅକ୍ଷୁଣ୍ଣ ଅବସ୍ଥାରେ ଥିଲା ।

ଅନ୍ଧକାର କ୍ରମଶଃ ବୃଦ୍ଧି ପାଉଥିଲା । କିନ୍ତୁ ସେଇଠାରେ ଏ କୋଠାଘରଟି ଥିଲା, ଯେଉଁ ଅନ୍ଧକାର ପ୍ରବେଶ କରି ପାରୁ ନଥିଲା । ଯେପରି ଅନ୍ଧକାର ଏ କୋଠା-ଘରର ପାଖ ପୁଦ୍ଧା ମାଡ଼ିବାକୁ ଭୟ କରୁଥିଲା । ନଦୀକୂଳରେ ଠିଆ ହୋଇଥିବା ସୁନ୍ଦରୀ ତରୁଣୀ ପରି କୋଠାଘରଟି ନିଜର ଅପରୂପ ସୌନ୍ଦର୍ଯ୍ୟ ନେଇ ଅନ୍ଧକାର ଭିତରେ ଝଲକୁଥିଲା ।

"ତାଜମହଲ !" ନୋ ଚିତ୍କାରି ପକାଇ ଚିତ୍କାରକଲା । ସେ ଦୌଡ଼ିଯାଇ କବାଟ ଖୋଲିଦେଲା । ଭିତରକୁ ବଲ୍ ବଲ୍ କରି ଅନାଇଲା । ପ୍ରଫେସର ତାଜମହଲ ବିଷୟରେ ଆଗରୁ ସେମାନଙ୍କୁ କହିଥିଲେ, ତାଜମହଲର ଫଟ ମଧ୍ୟ ସେମାନଙ୍କୁ ଦେଖାଇଥିଲେ । ବର୍ତ୍ତମାନ ସତକୁ ସତ ତାଜମହଲ ତାଙ୍କ ଆଖି ଆଗରେ ଠିଆ-ହୋଇଥିଲା ।

ସବୁ ଖତମ ହୋଇ ଯାଇଥିଲା, କିନ୍ତୁ ସୁନ୍ଦର ଚିହ୍ନ ଏ ତାଜମହଲ ବଞ୍ଚିଯାଇଥିଲା । ପ୍ରଫେସର ଆଶ୍ଚର୍ଯ୍ୟ ହେଲେ । ସେ ତିନିଜଣଯାକ ନିଜ ନିଜର ମନୋଭାବ ପ୍ରକାଶ ନ କରି ଚୁପଚାପ ତାଜମହଲ ସାମନାରେ ଠିଆହୋଇଥିଲେ । ତାର ଭିତର କାଚ ଉପରେ ଚତୁର୍ଥୀ ଚନ୍ଦ୍ରଙ୍କର ପ୍ରତିଫଳନ ଏକ ସ୍ୱପ୍ନର ମୁଦ-ପରି ମନେହେଲା ।

ଆହା ! କି ଚମତ୍କାର ! ନୋ ତା ହୃଦୟକୁ କହିପକାଇଲା । ସେ ସ୍ନେହର ହାତଧରି କହିଲା "ତୁମର ହାତ କାହିଁକି ନିଆଁ ପରି ଜଳୁଛି ।"

ସ୍ନେହ ଉତ୍ତରରେ କହିଲା "ଆଃ ! ତୁମେ ଆଜି ଖୁବ୍ ସୁନ୍ଦର ଦେଖାଯାଉଛ !" ସ୍ନେହ ତାକୁ କହିଲା "ମତେ ପ୍ରକୃତରେ ଜଣା ନଥିଲା ତମେ ଏତେ ସୁନ୍ଦର !" ସେ ଅତି ଆଶ୍ଚର୍ଯ୍ୟ ଏବଂ ଚକିତରେ 'ନୋ'ର ଚେହେରାକୁ ଦେଖିବାକୁ ଲାଗିଲା ସତେଯେପରି ସେ ପ୍ରଥମ କରି 'ନୋ'କୁ ଦେଖୁଛି ।

ନୋ ପ୍ରଫେସରଙ୍କୁ କହିଲା "ମୁଁ ଷ୍ନେହକୁ ବିବାହ କରିବି । ଆମେ ଦୁହେଁ ଏ ତାଜମହଲ ସାମନାରେ ହିଁ ଆମ ସ୍ୱପ୍ନର ସଂସାରକୁ ବାସ୍ତବ ରୂପ ଦେବା । ଏଠାରେ ହିଁ ଆମର ତଥା ଏ ଧରାର ପ୍ରଥମ ସନ୍ତାନ ଜନ୍ମନେବ ।"

ପ୍ରଫେସର ଡରିଗଲେ, କହିଲେ ତମେ ତ ଜାଣେ ଏ ପୃଥିବୀ ବକ୍ଷରେ ଅନେକ ଯୁଦ୍ଧ ଘଟିଯାଇଛି, ପୃଥିବୀ ରକ୍ତ ସ୍ନାନ ହୋଇଛି । ଏ ଭୂମି ସେମାନଙ୍କର ରକ୍ତ ପାନ କରିଛି । ତମେ ଏଠି ରହିବ ବା କିପରି ?

'ନୋ' ଅତି ପ୍ରେମର ସହ ଉତ୍ତରଦେଲା, "ଯେପର୍ଯ୍ୟନ୍ତ ତାଜମହଲ ଜୀବିତ ଅଛି, ସେପର୍ଯ୍ୟନ୍ତ ପୃଥିବୀରୁ ପ୍ରେମ ସରି ନାହିଁ, ମଣିଷର ଜୀବନ ମଧ୍ୟ ସରି ନାହିଁ ।

"ମୁଁ ତମ ଦୁହିଁକୁ ଏବଂ ଏ ତାଜମହଲକୁ ଫୋଟନ୍ ରକେଟ୍‌ରେ ଉଠାଇ ପୁଣି ଡ୍ରୋମେଦା ଗ୍ରହକୁ ନେଇଯିବି ଏବଂ ସେଇଠି ତମେ ରହିବ ।"

ସ୍ନେହ ଡରିଯାଇ କହିଲା "ତେବେ ସ୍ୱାର୍ଥପରତା ଅନ୍ୟାୟ ଆଉ କଣ ହୋଇପାରେ ପ୍ରଫେସର ସାହେବ ! ତାଜମହଲକୁ ତ ଦେଖିଲୁ, ଲାଗୁଛି ସତେଯେପରି ଏହା ମଣିଷ ହାତରୁ ତିଆରି ହୋଇନି, ପୃଥିବୀ ବକ୍ଷରୁ ହିଁ ଏହାର ଜନ୍ମ, ଏହା ହିଁ ତ ପୃଥିବୀର ସ୍ୱପ୍ନ ଏବଂ ସ୍ୱପ୍ନକୁ ଚୋରାଇ ହୁଏ ନାହିଁ ପ୍ରଫେସର ସାହେବ ।"

କିନ୍ତୁ ଏ ପୃଥିବୀରେ ତ ଘୃଣାର କିରଣ ବରଷୁଛି ଏବଂ ଘୃଣାଭାବ ମଣିଷମାନଙ୍କ ଅସ୍ଥି କଙ୍କାଳ ଭିତରେ ପ୍ରବେଶ କରୁଛି, ପ୍ରଫେସର ପାଟିକଲେ ।

'ତା' ହେଲେ ଏ ତାଜମହଲ କିପରି ତିଆରି ହେଲା," ସ୍ନେହ ପଚାରିଲା ।

"ଯେତେ ଏ ଘୃଣା ପୃଥିବୀ ସହ ପ୍ରେମ କଲା ତାହେଲେ ଏ ତାଜମହଲ ଗଢ଼ିଉଠିଲା କିପରି" ? 'ନୋ' ପ୍ରଫେସରଙ୍କୁ ପଚାରିଲା ଏବଂ ସ୍ନେହର ହାତଧରି କହିଲା, "ଆପଣ ଏପରି କୁହନ୍ତୁ ନାହିଁ ପ୍ରଫେସର ସାହେବ । ଆପଣ ଆମକୁ ଏପରି କୁହନ୍ତୁ ନାହିଁ, କେତେବେଳେ ତ ଏହାର ପରିବର୍ତ୍ତନ ଘଟିବ, କେତେବେଳେ ତ ଘୃଣାଭାବ ପ୍ରେମରେ ପରିଣତ ହେବ । କେତେବେଳେ ତ ପ୍ରେମର ସୁଗନ୍ଧ

ଏ ପୃଥିବୀକୁ ଆମୋଦିତ କରିବ । ସେତେବେଳେ ଗାଁ ଗାଁ, ଗଳିଗଳି ସହର ସହରକୁ ବ୍ୟାପିଯିବ ।"

ପୁଣି ଗୋଟିଏ ଲମ୍ବା ନିଃଶ୍ୱାସ ଗ୍ରହଣ କରି ନୋ ସ୍ପେସ୍‌ର ଚଉଡ଼ା ଗ୍ରହ ଉପରକୁ ଆଉ ଜଗଲା ଏବଂ ଆଖି ବନ୍ଦ କରି ପ୍ରେମରେ ବିହ୍ୱଳ ହୋଇ ସ୍ପେସ୍‌କୁ ପ୍ରଶ୍ନ କଲା "ମୁଁ ଏଠାରେ ଆମ ଦୁହିଁଙ୍କର ସନ୍ତାନଙ୍କୁ ଦେଖିପାରିବି ତ ?

ସେଇ ସନ୍ତାନମାନେ ହିଁ ବର୍ତ୍ତମାନ ପୃଥିବୀରେ ଏ ତାରକାମଣ୍ଡଳର ସନ୍ଦେଶକୁ ବୃକ୍ଷ ଆଡ଼େ ବଢ଼ାଇ ଦେଇଛନ୍ତି ।



# ମଙ୍ଗଳ ଗ୍ରହର ଯାତ୍ରୀ

ମଙ୍ଗଳ ଗ୍ରହର ଉଚ୍ଚସ୍ତରସ୍ଥ କାର୍ଯ୍ୟକାରୀ କମିଟିର ଗୁପ୍ତ ବୈଠକ ଆରମ୍ଭ ହେଲା । ଆଜି ପ୍ରାୟ ସବୁ ସଭ୍ୟ ଉପସ୍ଥିତ ଥିଲେ, କାରଣ ପ୍ରଥମଥର ପାଇଁ ମଙ୍ଗଳ ଗ୍ରହର ଯାତ୍ରୀମାନେ ପୃଥିବୀ ଉପରେ ଏଗାର ମାସ କାଳ କଟେଇ ଫେରିଥିଲେ । ଆଜି ସେମାନେ ତାଙ୍କର ରିପୋର୍ଟ ପେଶ କରିବାର କଥା ।

କାର୍ଯ୍ୟକାରୀ କମିଟିର ଅଧ୍ୟକ୍ଷ ନିଜ ଶରୀର ଭିତରେ ଲଗାହୋଇଥିବା ଘଣ୍ଟାକୁ ଲକ୍ଷ୍ୟକଲେ । (ମଙ୍ଗଳ ଗ୍ରହରେ କେହି ଘଣ୍ଟା ହାତରେ ବାନ୍ଧନ୍ତି ନାହିଁ—ସେମାନଙ୍କ ହୃଦୟ ଯେଉଁ ସ୍ଥାନରେ ଥାଏ, ସେଥିରେ ଗୋଟିଏ ଘଣ୍ଟା ଥାଏ । ସେ ଟିକ୍ ଟିକ୍ ଶବ୍ଦ କରି ସମୟ ଜଣାଇଦିଏ—ଏଣୁ ମଙ୍ଗଳ ଗ୍ରହର ଅଧିବାସୀମାନେ କେହି କାହାକୁ ସମୟ ପଚାରନ୍ତି ନାହିଁ) ।

ଘଣ୍ଟାର ଶବ୍ଦ ଅଧ୍ୟକ୍ଷଙ୍କୁ ସୂଚେଇଦେଲା ଯେ ବର୍ତ୍ତମାନ ରିପୋର୍ଟ ପେଶ କରିବାର ସମୟ ଆସିଗଲା ।

ସେ ଡାକଲେ "ଦଶମିକ୍ ଶୂନ୍ ଶୂନ୍ ଶୂନ୍ ତିନି ଦୁଇ—ହାଜର ଅଛୁ ।"

(ମଙ୍ଗଳରେ ଆମମାନଙ୍କ ପରି ନାଁ ରଖାଯାଏନି—ସେଠାରେ ପ୍ରତ୍ୟେକ ମଣିଷର ଶରୀରରୁ ଏକ ବିଶେଷ ପ୍ରକାରର ବିଦ୍ୟୁତ୍ ତରଙ୍ଗ ବାହାରେ । ଜନ୍ମ-ହେଲମାତ୍ରେ ହିଁ ସେହି ବିଦ୍ୟୁତ୍ ତରଙ୍ଗକୁ ମାପିଦିଆଯାଇଥାଏ । ସେହି ବିଦ୍ୟୁତ୍ ତରଙ୍ଗର ମାପ ମଣିଷ, ମଣିଷ ଭିତରେ ଭିନ୍ନ ଭିନ୍ନ ହୋଇଥାଏ । ଏଣୁ ମଙ୍ଗଳ

ଗହର ଲୋକଙ୍କୁ ତାଙ୍କର ବିଦ୍ୟୁତ୍ ତରଙ୍ଗର ଲମ୍ବାନେଇ ନାମକରଣ କରିବାକୁ ପଡ଼ିଥାଏ । ଏଣୁ ଚହ୍ନିବା ପାଇଁ ବିଶେଷ କଷ୍ଟ ହୁଏ ନାହିଁ) ।

ଦଶମିକ୍ ଶୂନ୍ ଶୂନ୍ ଶୂନ୍ ତିନ ଦୁଇ ନିଜ ଗ୍ରହ ଉପରେ ଥିବା ଏକ ବଟନ୍ ଦବାଇଲା । ବଟନ୍ ଦବାଇବାରୁ ତାର ଗ୍ରହ ଖୋଲିଗଲା । ଗ୍ରହ ଭିତରେ ଗୋଟିଏ ଟେପ୍ ରେକର୍ଡ଼ର ରଖାହୋଇଥିଲା—ବିହୁତ ଗ୍ରେଟ ଏବଂ ଏହି ଗ୍ରେଟ ଟେପ୍-ରେକର୍ଡ଼ର ସାଙ୍ଗରେ ମାଇକ୍ରୋଫୋନ୍ ମଧ୍ୟ ଲଗାହୋଇଥିଲା । ଦଶମିକ ଶୂନ୍ ଶୂନ୍ ଶୂନ୍ ତିନ ଦୁଇ ନିଜ ଗ୍ରହରେ ହାତ ପୂରାଇ ମାଇକ୍ରୋଫୋନ୍‌କୁ ବାହାରକୁ ଆଣି ନିଜ ମୁହଁରେ ଫିଟ୍ କଲା । ମଙ୍ଗଳବାସୀମାନେ କେବଳ ମାଇକ୍ରୋଫୋନ୍ ଜରିଆରେ ହିଁ କଥାବାର୍ତ୍ତା କରନ୍ତି ଏବଂ ଏହି କାରଣରୁ ହିଁ ହିନ୍ଦୁସ୍ଥାନୀ ନେତାମାନଙ୍କ ସାଙ୍ଗରେ ସେମାନଙ୍କର ମେଳ ଖାଏ ।

ଯେମିତି ଦଶମିକ ଶୂନ୍ ଶୂନ୍ ଶୂନ୍ ତିନ୍ ଦୁଇ ନିଜ ଗ୍ରହର ବଟନ୍ ଦାବି ଗ୍ରହ ଖୋଲିଦେଇଛି, କାର୍ଯ୍ୟକାରୀ ସମିତିର ସବୁ ସଭ୍ୟମାନେ ମଧ୍ୟ ନିଜ ନିଜ ଗ୍ରହର ବଟନ ଦବାଇ ନିଜ ନିଜର ମାଇକ୍ରୋଫୋନ୍ କାଢ଼ି କାନରେ ଲଗାଇ-ଦେଲେ (ମଙ୍ଗଳରେ ପ୍ରତ୍ୟେକ ପ୍ରାଣୀ ଅନ୍ୟ ପ୍ରାଣୀର ଆବାଜକୁ ନିଜ ଟେପ-ରେକର୍ଡ଼ରେ ସୁରକ୍ଷିତ ରଖେ ଆଉ ଏଇଥିପାଇଁ ମଙ୍ଗଳରେ କେହି ପ୍ରାଣୀ ମିଛ କହନ୍ତି ନାହିଁ) ।

ଦଶମିକ ଶୂନ୍ ଶୂନ୍ ଶୂନ୍ ତିନ ଦୁଇ ରିପୋର୍ଟ ପେଶ କରିବା ପାଇଁ, କାଠଗଡ଼ାରେ ଠିଆହୋଇଗଲା । ଉକ୍ତ କାର୍ଯ୍ୟକାରୀ କମିଟିର ସେକ୍ରେଟେରୀ ମଧ୍ୟ ଅଧ୍ୟକ୍ଷ ମହୋଦୟଙ୍କ ଆଦେଶରେ ତାଙ୍କୁ ଜେରା କରିବା ପାଇଁ କାଠଗଡ଼ାର ସାମନାରେ ଠିଆହୋଇଗଲେ ।

ଦଶମିକ ଶୂନ୍ ଶୂନ୍ ଶୂନ୍ ତିନ ଦୁଇ ତାଙ୍କ ରିପୋର୍ଟ ଆରମ୍ଭ କଲେ—

"ଅଧ୍ୟକ୍ଷ ମହୋଦୟ ଏବଂ ସଦସ୍ୟଗଣ ।

ଯେହେତୁ ପୃଥିବୀବାସୀମାନେ ସ୍ପା' ମଧ୍ୟରେ ଖୁବ୍ ଉନ୍ନତି କରି ପାରିଲେଣି ଏବଂ ବର୍ତ୍ତମାନ ସେମାନେ ଆମ ଉପଗ୍ରହର ଗ୍ରହପଟେ ଚକ୍କର ଲଗାଇବାକୁ

ଆରମ୍ଭ କରିଦେଲେଣି ଏଣୁ ଉଚ୍ଚ କାର୍ଯ୍ୟକାରୀ ସଂ ନିଷ୍ଟସ୍ଥ କଲ ଏହି ପୃଥିବୀବାସୀଙ୍କ ବିଷୟରେ ଅଧିକ ଜ୍ଞାନ ଆହରଣ କରିବା ଉଚିତ୍ । ମୁଁ ଏହି ଯାତ୍ରା ଅଧ୍ୟକ୍ଷ ମହୋଦୟଙ୍କ ଆଦେଶାନୁସାରେ ଆରମ୍ଭ କରି ଶେଷ କରିଛି ଏବଂ ଏହାକୁ ସମସ୍ତଙ୍କଠାରୁ ଗୁପ୍ତ ରଖିଛି । ଆଉ ମୋର ଏହି ଏଗାର ମାସର ପୃଥିବୀ ଉପରେ ଭ୍ରମଣର କାହାଣୀ ଅତି ମନୋରଞ୍ଜକ । ବର୍ତ୍ତମାନ ମୋର ଏ ଅଭିଜ୍ଞତାକୁ ମୁଁ ଆପଣଙ୍କ ଆଗରେ ପେଶ କରିବା ପାଇଁ ପ୍ରୟାସ କରୁଛି ।

ପୃଥିବୀବାସୀଙ୍କ ଉଚ୍ଚତା ଆମମାନଙ୍କର ଦୁଇଗୁଣ । ଅର୍ଥାତ୍ ଛଅ ଫୁଟ ପାଖାପାଖି—କିନ୍ତୁ ଓଜନରେ ସେମାନେ ଆମର ଦଶଗୁଣ ହିଁ—ଚାଲନ୍ତି ମଧ୍ୟ ଖୁବ୍ ଧୀରେ କାରଣ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ତାଙ୍କୁ ଟାଣିରଖେ; ଯାହାକି ମଙ୍ଗଳର ମାଧ୍ୟାକର୍ଷଣ ଶକ୍ତିର ଶହେଗୁଣ— ଏଥିପାଇଁ ମଙ୍ଗଳବାସୀ ଯେତେବେଳେ—ଦିନକୁ ଶେଷ-କରନ୍ତି ସେତିକି ଶେଷକରିବା ପାଇଁ ପୃଥିବୀବାସୀଙ୍କୁ ଦୀର୍ଘ କେତେମାସ ଲାଗିଯିବ । ଏଇଥିପାଇଁ, ପୃଥିବୀବାସୀମାନେ ଲମ୍ବାଯାତ୍ରା କରି ପାରନ୍ତି ନାହିଁ, ସେମାନେ ଲମ୍ବା-ଯାତ୍ରା ପାଇଁ ରେଲଗାଡ଼ି, ଉଡ଼ାଜାହାଜ, ମୋଟର ଗାଡ଼ି ଇତ୍ୟାଦିର ସାହାଯ୍ୟ ନେଉଛନ୍ତି ।"

ସେନେଟେଟି ଜେରାକଲେ—"ଏସବୁ ରେଲଗାଡ଼ି, ଉଡ଼ାଜାହାଜ ଏବଂ ମୋଟର ଗାଡ଼ି ଆଉ କି ଜିନିଷ ?

"ଯାତ୍ରାକରିବା ପାଇଁ ଘର "ରିପୋର୍ଟ ପେଶ କରୁଥିବା ଲୋକଟି କହିଲା, ଏସବୁ ବିଜୁଳି, ତେଲ ଏବଂ ବାଷ୍ପ ଦ୍ୱାରା ହିଁ ଚାଲେ ।"

"କାହିଁକି ପୃଥିବୀବାସୀଙ୍କ ଶରୀରରେ କଣ ବିଜୁଳିର ମଟର ଖଞ୍ଜାଯାଇ ନାହିଁ, ଯାହାକି ଆମ ଶରୀରରେ ବହୁଆଗରୁ ଲଗାଯାଇଛି ?" ସେନେଟେଟି ଆଶ୍ଚର୍ଯ୍ୟର ସହ ପଚାରିଲେ ।

"ଆଜ୍ଞା ନାହିଁ, ପୃଥିବୀର ମନୁଷ୍ୟର ଶରୀରରେ ଯେଉଁ ବିଦ୍ୟୁତ୍ ତରଙ୍ଗ ଖେଳୁଛି ତାହାର ଶକ୍ତି ବହୁତ କମ୍, ଏତେ କମ୍ ଯେ ଥରେ ମୁଁ ଭୁଲରେ ପୃଥିବୀର ଜଣେ ମଣିଷକୁ ଛୁଇଁଦେଲି ସେ ଏତେ ଡରିଗଲା ଯେ ସେଇଠାରେ ହିଁ ପଡ଼ି ମରିଗଲା । ତାର ମୃତ୍ୟୁପରେ ତାର ଲାସ୍‌କୁ ଏକ ନିର୍ଜନ ସ୍ଥାନକୁ ନିଆଗଲା ଏବଂ

ସେଠାରେ ତାଙ୍କୁ କାଟିକରି ଦେଖାଗଲା । ମନୁଷ୍ୟର ଶରୀର ମଙ୍ଗଳବାସୀଙ୍କ ଶରୀର-ଠାରୁ ପୃଥକ୍‌ପୃଥକ୍ ଅଲଗା । ମନୁଷ୍ୟର ଶରୀର ଭିତରେ ଏକ ଲାଲ ରଙ୍ଗର ପାଣି ଭର୍ତ୍ତିହୋଇ ରହିଛି । ତା' ଶରୀରରେ ଘଣ୍ଟା ସ୍ଥାନରେ ଦଳ ରହିଛି ଏବଂ ଫୁସ୍ ଫୁସ୍ ରହିଛି । କିନ୍ତୁ ସେଥିରେ ବିଦ୍ୟୁତ୍ ତରଙ୍ଗ ବହୁତ କମ୍ ଖେଳୁଛି । ମତେ ସେମାନଙ୍କ ସାଙ୍ଗରେ ମିଶିବାକୁ ନିଜର ବିଦ୍ୟୁତ୍ ତରଙ୍ଗକୁ ବହୁତ କମାଇଦେବା ପାଇଁ ପଡ଼ିଲା ଏବଂ ପାଖାପାଖି ପୃଥିବୀବାସୀଙ୍କ ପରି ରହିବାକୁ ପଡ଼ିଲା ।"

"ଫୁସ୍ ଫୁସ୍ କଣ ?" ଉପାଧ୍ୟକ୍ଷ ପଚାରିଲେ ।

"ଶ୍ୱାସନେବା ପାଇଁ ଏକ ଯନ୍ତ୍ର ଯାହାକି ମଙ୍ଗଳବାସୀଙ୍କ କୌଣସି କାମରେ ଆସେନା ।"

"ଆମର ଏଠି ତ କୌଣସି ମଙ୍ଗଳବାସୀ ନିଃଶ୍ୱାସ ନିଅନ୍ତି ନାହିଁ ।" "ବୁଝାପଡ଼ୁନି ଏ ଶ୍ୱାସ ନେବାର ଆବଶ୍ୟକତା କଣ ?" ଅଧ୍ୟକ୍ଷ ମହୋଦୟ ପଚାରିଲେ । "ସ୍ୱା ସାଙ୍ଗରେ ମଣିଷ ଶରୀରରେ ଗୋଟିଏ ପେଟ ମଧ୍ୟ ଅଛି, "ରିପୋର୍ଟ ଦେଉଥିବା ଲୋକଟି କହିଲା ।"

"ଏ ପେଟ ପୁଣି କଣ ?"

"ଏ ପେଟ ଭିତରକୁ ଖାଦ୍ୟ ଯାଏ ।"

"ଏ ଖାଦ୍ୟ ପୁଣି କଣ ?"

"ଯାହାକୁ ଲୋକେ ଖାଆନ୍ତି ।"

"ଏ ଖାଇବା ଜିନିଷଟି କଅଣ—ଆମକୁ ସମ୍ପୂର୍ଣ୍ଣ ବିବରଣୀ ଦିଅ ।"

"ଅଧ୍ୟକ୍ଷ ମହୋଦୟ ଏବଂ ସଦସ୍ୟବୃନ୍ଦ ! ପୃଥିବୀର ମଣିଷ ମଙ୍ଗଳର ମନୁଷ୍ୟଠାରୁ ଏତେ ଅଲଗା ଯେ ମତେ ବୁଝାଇବା ପାଇଁ କଷ୍ଟହୋଇ ପଡ଼ିବ – କିନ୍ତୁ ମନୁଷ୍ୟଜାତିର ସଭ୍ୟତା ତା'ର ଉନ୍ନତି ଉପରେ ହିଁ ସମ୍ଭବ ହୁଏ, ତା'ର ଭବିଷ୍ୟତ ପାଇଁ ଏ ଫୁସ୍‌ଫୁସ୍‌ର କାର୍ଯ୍ୟ ଏତେ ମହତ୍ତ୍ୱପୂର୍ଣ୍ଣ ଯେ ମୁଁ ତା' ବିଷୟରେ ବିଶେଷ ଆଲୋକପାତ କରିବାର ଯଥାର୍ଥତା ଅନୁଭବ କରୁଛି । ଏହା ଏକ ଶାରୀରିକ

ଯନ୍ତ୍ର ଯାହାପ୍ରତି ପୃଥିବୀ ନିବାସୀଙ୍କ ପେଟ ଭିତରେ ଥାଏ । ତାହାକୁ ଲଗି ଏକ ନଳୀଥାଏ ଯାହାକି ମୁହଁପାଖ ପର୍ଯ୍ୟନ୍ତ ଖୋଲାଥାଏ । ଏହି ମୁହଁଦେଇ ମନୁଷ୍ୟ ତା'ର ଉପର ଦୁଇ ଧାଡ଼ିଦାନ୍ତ ଭୋଜନ କରିଥାଏ । ଏହି ଭୋଜନ ସେ ପଶୁପକ୍ଷୀ ମାରି କିମ୍ବା ଫଳମୂଳ କାଟି ତିଆରି କରିଥାଏ । ସେହି ଭୋଜନ ତା ପେଟ ଭିତରକୁ ଯାଇ ତା ଶରୀର ଅଙ୍ଗ ପ୍ରତ୍ୟଙ୍ଗକୁ ବୃଦ୍ଧି କରିବାରେ ସାହାଯ୍ୟ କରେ ଏବଂ ସେହି ଭୋଜନଦ୍ୱାରା ହିଁ ମନୁଷ୍ୟର ଶରୀରର ଇଞ୍ଜିନ ଚାଲେ ।''

''ଓହୋ !'' ଅଧ୍ୟକ୍ଷ ମହୋଦୟ ଅଟ୍ଟହାସ କହିଲେ, ତାହେଲେ ପୃଥିବୀର ମନୁଷ୍ୟ ଏବେ ମଧ୍ୟ ପଶୁ ଶ୍ରେଣୀରେ ରହିଛି ଆଉ ପଶୁମାନଙ୍କୁ ମାରି, ଘାସ ଇତ୍ୟାଦି ଖାଇ ତାର ଶରୀରକୁ ବଞ୍ଚାଇ ରଖିଛି । ବର୍ତ୍ତମାନ ତାକୁ ମଙ୍ଗଳ ଗ୍ରହବାସୀଙ୍କର ଜାଗାକୁ ପହଞ୍ଚିବାକୁ ହଜାର ହଜାର ବର୍ଷ ଲାଗିଯିବ । ବର୍ତ୍ତମାନ ଏହି ପଶୁତୁଲ୍ୟ ମନୁଷ୍ୟଙ୍କଠାରୁ ଆମର କୌଣସି ବିପଦ ଆଶଙ୍କା କରିବା ଉଚିତ୍ ନୁହେଁ ।

(ମଙ୍ଗଳ ଗ୍ରହରେ ନା କୃଷିବାସ ହୁଏ, ନା ପଶୁ ଶୀକାର ହୁଏ । ମଙ୍ଗଳ-ବାସୀର ଶରୀରରେ ବେକର ପଛଆଡ଼େ ଦୁଇ କାନ୍ଧର ମଝିରେ ଛଅଫୁଟ ଲମ୍ବା ଓ ଦୁଇଫୁଟ ଚଉଡ଼ାର ଏକ ସ୍ୱଚ୍ଛ ଝିଲ୍ଲୀର ଆବରଣ ଥାଏ ଯାହାକି ସୂର୍ଯ୍ୟକିରଣରୁ ଶକ୍ତି ଆହରଣ କରେ, ଯେଉଁ ଶକ୍ତି ଭୂ-ପୃଷ୍ଠରେ ପ୍ରତ୍ୟେକ ଗଛଲତା ସୂର୍ଯ୍ୟକିରଣରୁ ଆହରଣ କରିଥାନ୍ତି । ମଙ୍ଗଳବାସୀଙ୍କୁ ଏହି ଝିଲ୍ଲୀ ସୂର୍ଯ୍ୟକିରଣରୁ ଶକ୍ତି ଆହରଣ କରି ସାରା ଶରୀରରେ ପହଞ୍ଚାଇଦିଏ ଏଥିପାଇଁ ଭୋକ ଶୋଷର ସମସ୍ୟା ମଙ୍ଗଳ ଗ୍ରହରେ ଦେଖାଯାଏ ନାହିଁ ) ।

''ପୃଥିବୀର ମଣିଷପାଇଁ ସବୁଠୁଁ ବଡ଼ ସମସ୍ୟା ହେଲା ଜୀବନଧାରଣ । ଏହି ଜୀବନଧାରଣ ପାଇଁ ତାକୁ ଖାଦ୍ୟ ଦରକାର ଏବଂ ଏହି ଖାଦ୍ୟ ଯୋଗାଡ଼ କରିବା ପାଇଁ ସେ ବିଭିନ୍ନ ପନ୍ଥାର ଆଶ୍ରୟ ନିଏ; ଅର୍ଥାତ୍ ସେ ଶୀକାର କରେ, କ୍ଷେତରେ

ହାଲକରେ କମ୍ଭା ଦରକାର ପଡ଼ିଲେ ଅସ୍ତ୍ରଶସ୍ତ୍ରର ସାହାଯ୍ୟ ନିଏ । ଦରକାର ପଡ଼ିଲେ ସେ ନିଜ ଦେଶରେ ରହି ଅନ୍ୟ ଦେଶକୁ ମଧ୍ୟ ଆକ୍ରମଣ କରେ । ମାନବଜାତିର ସବୁଠୁଁ ବଡ଼ ସମସ୍ୟା ହେଲା ଖାଦ୍ୟ । ଆମ ଶୁକ୍ର ଗ୍ରହରେ ଏହି ଖାଦ୍ୟର ସମସ୍ୟା ଆଦୌ ନାହିଁ ।"

"କିନ୍ତୁ ମୋର ବିଶ୍ବାସରେ ମନୁଷ୍ୟ ଜୀବନର ଜୀବନ୍ତପାଇଁ ପେଟ ହିଁ ସବୁଠୁଁ ବେଶି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରିଥାଏ ଅନ୍ୟ କେହି ନୁହେଁ । ମଣିଷର ଖାଦ୍ୟ ତାକୁ କେଉଁଠି ନେଇ କେଉଁଠି ପହଞ୍ଚାଇ ଦେଲାଣି ।" ରିପୋର୍ଟ ପେଶ୍‌କରୁଥିବା ବ୍ୟକ୍ତି କମିଟିକୁ ସାବଧାନ କରିଦେଲା······ଏହି ଖାଦ୍ୟ ହିଁ ତାକୁ ମଙ୍ଗଳ ଗ୍ରହ ପର୍ଯ୍ୟନ୍ତ ପହଞ୍ଚାଇ ଦେଇପାରେ—ମୋ ବିଶ୍ବାସରେ ମନୁଷ୍ୟ ଶରୀରର ଏହି ପେଟ ହିଁ ତାର ହୃଦୟଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ।"

"ଏ ହୃଦୟ ପୁଣି କଣ ?" ଜଣେ ମଙ୍ଗଳବାସୀ ପଚାରିଲା ।

ପୃଥିବୀ ଭ୍ରମଣରୁ ଫେରିଥିବା ମଙ୍ଗଳବାସୀ କହିଲା "ଏହି ହୃଦୟକୁ ମୁଁ ମଧ୍ୟ ଆଜିପର୍ଯ୍ୟନ୍ତ ବୁଝିପାରିଲି ନାହିଁ । ପୃଥିବୀରେ ଲୋକେ ହୃଦୟ ଦିଅନ୍ତି, ହୃଦୟ ନିଅନ୍ତି । ସେଠାରେ ହୃଦୟ ଦିଆନିଆ ହୁଏ, ହୃଦୟ ହସେ, କାନ୍ଦେ ବରବାଦ ମଧ୍ୟ ହୁଏ । ଦିନେ ମୋ ପଡ଼ୋଶୀ ଯୁବକଟିଏ ଦୁଇଦିନ ପର୍ଯ୍ୟନ୍ତ କିଛି ଖାଇଲା ନାହିଁ । ଦିନରାତି ଖାଲି ସୁଁ-ସୁଁ କରି କାନ୍ଦିଲା । ଯେତେବେଳେ ମୁଁ ତାକୁ ପଚାରିଲି ତୋର କଣ ହୋଇଛି, ସେ ସେହି ପାଖଆଖରେ ରହୁଥିବା ଆଉଜଣେ ଯୁବତୀର ନାଁ ଉଚ୍ଚାରଣ କରି କହିଲା "ମୁଁ ତାକୁ ମୋର ହୃଦୟ ଦେଇଦେଇଛି ।"

"ମୁଁ ଖୁବ୍ ଆଶ୍ଚର୍ଯ୍ୟ ହେଲି, ତାର ଛାତିରେ ହାତ ଦେଲି, ହୃଦୟ ଯଥାସ୍ଥାନରେ ଥିଲା, ନିୟମାନୁସାରେ ଉଠାପକା କରୁଥିଲା । ପିଲାଟି ତାହେଲେ ମିଛ'

କହୁଥିଲି, ମୁଁ ଘିଗିଗଲି । ଏଗାରମାସ କାଳ ପୃଥିବୀରେ ରହିସାରିଲାପରେ ମଧ୍ୟ ମୁଁ ଜାଣିପାରିଲି ନାହିଁ ମଣିଷର ଏଇ ହୃଦୟରୂପକ ଜିନଷଟି ଥାଏ କେଉଁଠି; ଅର୍ଥାତ୍ କଥା କଥାରେ ମଣିଷ ଏହି ହୃଦୟ କଥା ହିଁ ବାରମ୍ବାର ଉଚ୍ଚାରଣ କରେ । ସେ ହୃଦୟଟା ତା'ହେଲେ କେଉଁଠି ·· ?"

ଉଚ୍ଚ କାର୍ଯ୍ୟକାରୀ କମିଟିର ସେକ୍ରେଟେରୀ ରିପୋର୍ଟ ପେଶ କରୁଥିବା ବ୍ୟକ୍ତି ଉଦ୍ଦେଶ୍ୟରେ ପଚାରିଲେ "ବର୍ତ୍ତମାନ ତୁମେ ଯେଉଁ ସ୍ତ୍ରୀଲୋକଟିର ବିଷୟରେ କହୁଥିଲ—ଯାହାଙ୍କୁ ସେ ଯୁବକଟି ନିଜ ହୃଦୟ ଅର୍ପଣ କରିଥିଲା, ସେ ସ୍ତ୍ରୀଲୋକଟି କିପରି ଜିନଷ ? ଏବଂ ତା' ହୃଦୟ ସହିତ ମଣିଷର ହୃଦୟର କି ସମ୍ପର୍କ ?"

ରିପୋର୍ଟ ପେଶ୍ କରୁଥିବା ମଙ୍ଗଳବାସୀ ଦାଶନିକ ଶୁନ୍ ଶୁନ୍ ଶୁନ୍ ଉନ୍ ଦୁର ଆଖି ଉଜ୍ଜ୍ୱଳ ହୋଇଉଠିଲା—କହିଲା :

"ଶ୍ରୀମାନ ଯଦି କେହି ମତେ ପଚାରେ ଯେ ପୃଥିବୀରେ ତମେ ସବୁଠୁଁ ବିଚିତ୍ର ଜିନଷ କଣ ଦେଖିଲ"—ତେବେ ମୁଁ କହିବି···ସ୍ତ୍ରୀଲୋକ ।

"କିନ୍ତୁ ଏ ସ୍ତ୍ରୀ ଜିନଷଟି କିଏ, ଦେଖିବାକୁ କେମିତିଆ ? ଜଣେ ମାଙ୍ଗଳିକ ବୈଜ୍ଞାନିକ ପ୍ରଶ୍ନକଲା ·····ସେ କେଉଁଠାରୁ ଆରମ୍ଭ ହୋଇଛି ।

ସେ ନିଜ ବିଶ୍ୱାସରେ ଅଟଳ ରୁହେ, ସେ ପ୍ରଳୟ ସୃଷ୍ଟି କରେ ଏବଂ ସେ ପ୍ରତି ପୁରୁଷର ଜୀବନ ସଙ୍ଗିନୀ ହୁଏ ।"

"କିଛି ବୁଝାଯାଉନି", ମାଙ୍ଗଳିକ ବୈଜ୍ଞାନିକ ମୁଣ୍ଡ ହଲାଇଲେ, ଆଉଟିକେ ଭଲ ଭାବରେ ବୁଝାଅ ।"

"କିପରି ବର୍ଣ୍ଣନା କରିବି ? ରିପୋର୍ଟ ପେଶ୍ କରୁଥିବା ଲୋକଟି ବହୁ ଆଗପଛ ହୋଇ ଚନ୍ତାକରି କହିଲା, ଧୀରେ ଧୀରେ ସ୍ତ୍ରୀଲୋକଟିର ଦେହଭଙ୍ଗୀ ବିଷୟରେ କହିବାକୁ ଆରମ୍ଭ କରି ପୁଣି କଥା ମଝିରେ ନିଜର ବକ୍ତୃର ଭରଙ୍ଗକୁ ଏକାଠି କରିବାକୁ ଯାଇ ଚୁପ୍ ହୋଇଗଲା ।

"ଘଟଣାଟା ଏମିତିଆ ଥିଲା, କାରଣ ମଙ୍ଗଳରେ ସ୍ତ୍ରୀଲୋକ ନାହାନ୍ତି—ସବୁ ମଙ୍ଗଳବାସୀ ଦେଖିବାକୁ ଏକାପରି । ସେଠାରେ ମଣିଷଙ୍କ ଭିତରେ ବିବାହ ଇତ୍ୟାଦି ହୁଏ ନାହିଁ—କାରଣ ସେଠି ସ୍ତ୍ରୀଲୋକ ନଥାନ୍ତି—ଏଣୁ ବିବାହ କିପରି ହେବ ?

ମଙ୍ଗଳ ଗ୍ରହର ସନ୍ତାନମାନେ ଏକ ବିଚିତ୍ର ପ୍ରକ୍ରିୟାରୁ ଜନ୍ମନିଅନ୍ତି । ପ୍ରତି ଚାରିବର୍ଷରେ ଥରେ ଜଣେ ମଙ୍ଗଳବାସୀଙ୍କ ମୁହଁରୁ ଏକ ବିଚିତ୍ର ପ୍ରକାରର ଗୀତ ବାହାରେ । ଯେତେବେଳେ ଏହି ଗୀତ ବାହାରିବାର ସମୟ ଆସି ପହଞ୍ଚେ, ସେତେବେଳେ ମଙ୍ଗଳବାସୀର ମୁଣ୍ଡ ବହୁତ ଜୋରରେ ବିନ୍ଧିବାକୁ ଆରମ୍ଭ କରେ । ସେହି ମୁଣ୍ଡବିନ୍ଧା ସୂଚାଇଦିଏ ଯେ ଗୀତ ବାହାରିବାର ସମୟ ହୋଇଗଲାଣି । ଯେତେବେଳେ ମଙ୍ଗଳବାସୀର ମୁଣ୍ଡବିନ୍ଧା ଆରମ୍ଭ ହୁଏ, ସେତେବେଳେ ତାକୁ ନିକଟବର୍ତ୍ତୀ ହସପିଟାଲକୁ ନିଆଯାଏ, ସେଠାରେ ତା'ପାଟିରୁ ବାହାରୁଥିବା ଛେପ ଇତ୍ୟାଦିକୁ ଏକ ମାଟି ପାତ୍ରରେ ସୁରକ୍ଷିତ କରି ରଖାଯାଏ । ଏହି ମାଟି ପାତ୍ରରେ ହିଁ ନୂଆ ମଙ୍ଗଳ ଶିଶୁ ଜନ୍ମନିଏ ଏବଂ ଅଠରମାସ ପର୍ଯ୍ୟନ୍ତ ସେ ଏହି ମାଟିପାତ୍ର ଭିତରେ ବଢ଼େ ଏବଂ ଯେତେବେଳେ ତାର ଅଠରମାସ ସମ୍ପୂର୍ଣ୍ଣ ହୁଏ, ସେତେବେଳେ ସେ ମାଟି ପାତ୍ରରୁ ଛିଟିକି ବାହାରେ ଏବଂ ତାପରେ ନୂଆ ମଙ୍ଗଳ ଶିଶୁର ନୂଆ ଜୀବନଯାତ୍ରା ଆରମ୍ଭ ହୋଇଯାଏ ।

"ଏବେ କଣ କହିବି ବନ୍ଧୁଗଣ—ମଙ୍ଗଳବାସୀଟି ଯିଏ ରିପୋର୍ଟ ପେଶ୍ କରୁଥିଲା, ତା'ର ସ୍ୱର ହାତକୁ ମକଚି କହିଲା "ଜଣେ ସ୍ତ୍ରୀଲୋକ ମୋ

ସାଙ୍ଗରେ ଫଶିଯାଇଥିଲା; କିନ୍ତୁ ମୋର ଫୋଟନ୍ ରକେଟ୍‌ରେ ତାକୁ ଆଣିବା ପାଇଁ ଜାଗା ନ ଥିଲା । ସ୍ତ୍ରୀଟି ଏକ ପ୍ରକାରର ମନୁଷ୍ୟ—କିନ୍ତୁ ମନୁଷ୍ୟଠାରୁ ଦେଖିବାକୁ ଅତି ସୁନ୍ଦର, ଲୋଭନୀୟ ବସ୍ତୁ ଏବଂ ବନ୍ଧୁଗଣ ଦେଖିବାକୁ ସତରେ ଖୁବ୍ ଭଲଲାଗେ । ଆଖି, କାନ, ନାକ ସବୁ ଦେଖିବାକୁ ସୁନ୍ଦର ଏବଂ ତା' ଦେହରୁ ଏକ ଭିନ୍ନ ବାସ୍ନା ବାହାରେ । ମୋ ଇଚ୍ଛାହେଉଥିଲା, ମୁଁ ତା'ର ବାସ୍ନାକୁ ସବୁବେଳେ ଶୁଂଘୁଥାଆନ୍ତି ।"

"କଣ, ମଙ୍ଗଳର ଫୁଲଠୁଁ ମଧ୍ୟ ସେ ଅଧିକ ବାସେ ?"

"କୌଣସି ଫୁଲରେ ମଧ୍ୟ ଏପରି ବାସ୍ନା ନଥାଏ ବନ୍ଧୁଗଣ, ଯାହାକି ଗୋଟିଏ ନାରୀର ଦେହରେ ଥାଏ ।"

"କଣ, ତମେ ତାକୁ ଖାଇକରି ଦେଖିଛ ?" ମାଙ୍ଗଲିକ ବୈଜ୍ଞାନିକ ପଚାରିଲା ।

"ସ୍ତ୍ରୀଲୋକକୁ କେହି ଖାଆନ୍ତି ନାହିଁ,—ବନ୍ଧୁ-ତାକୁ ପ୍ରେମ କରାଯାଏ ।"

"ହଁ । ତା' ହେଲେ ଏ ପ୍ରେମ ଜିନିଷଟି କଣ ?

'ବନ୍ଧୁ—ଏ ପ୍ରେମ ମଧ୍ୟ ଏକ ବିଚିତ୍ର ଜିନିଷ । ମୁଁ ଏହାକୁ ବର୍ଣ୍ଣନା କରି ପାରିବି ନାହିଁ, କାରଣ ଏହା ଆମ ପ୍ରେମଭଳି ନୁହଁ—ଏହା କେବଳ କର୍ତ୍ତବ୍ୟ । କର୍ତ୍ତବ୍ୟର ଅର୍ଥାତ ଆପଣମାନେ ବୁଝନ୍ତି—ଏଥିପାଇଁ କି ବାପା ଅଠରମାସକାଳ ସନ୍ତାନର ମାଟିପାତ୍ରର ଦେଖାଶୁଣା କରନ୍ତି—କିନ୍ତୁ ଏହା ତାର କର୍ତ୍ତବ୍ୟ । ପ୍ରତ୍ୟେକ ମଙ୍ଗଳବାସୀର ଏହା ହିଁ କର୍ତ୍ତବ୍ୟ; କିନ୍ତୁ ସେ ମଙ୍ଗଳ ଗ୍ରହକୁ ପ୍ରେମ କରେ ନାହିଁ । ପ୍ରେମର ଭାବନାକୁ ଆପଣମାନେ ବୁଝିପାରିବେ ନାହିଁ । ମୁଁ ଗୋଟିଏ ଗାଁରେ

ଦୁଇସପ୍ତାହ ରହିଲି । ଯେଉଁ ଗୃହୀଘରେ ମୁଁ ଅତିଥି ହେଲି, ସେହି ଗୃହୀର ଝିଅ ଆଉ ଜଣେ ଯୁବକକୁ ପ୍ରେମ କରୁଥିଲା । କିନ୍ତୁ ଗୃହୀଟି ବହୁତ ଗରିବ ଥିଲା, ଦିନକୁ ଥରେମାତ୍ର ଅତି କଷ୍ଟରେ ନିଜର ଖାଇବା ଯୋଗାଡ଼ କରି ପାରୁଥିଲା; ତଥାପି ତାର ଝିଅଟି ସେ ଯୁବକକୁ ପ୍ରେମ କରୁଥିଲା, ଗଭୀରଭାବେ ପ୍ରେମ କରୁଥିଲା । କାରଣ ସେଇ ଯୁବକଟିର ବାପ ମାଆ ବହୁତ ଧନୀଥିଲେ, ଗାଁର ମୁଖିଆ ଥିଲେ ଏବଂ ଉଚ୍ଚ ଜାତିର ଥିଲେ । ଝିଅଟିର ପାଖରେ ତାର ପବିତ୍ର ପ୍ରେମ ଛଡ଼ା ଆଉ କିଛି ସମ୍ବଳ ନଥିଲା । ଏଥିପାଇଁ ଯୁବକଟିର ବାପା ମାଆ ଏ ବିବାହକୁ ସମ୍ମତି ପ୍ରଦାନକଲେ ନାହିଁ ଏବଂ ଯୁବକଟିର ବିବାହ ଅନ୍ୟ ଜାଗାରେ ସ୍ଥିର କରିଦେଲେ । ବିବାହଦିନ ସେ ଝିଅଟି ଗାଁ କୂଅରେ ଡେଇଁପଡ଼ି ଆତ୍ମହତ୍ୟା କରିଦେଲା ।

"ଜୀବନ ଦେଇଦେଲା ?" ଏକାସାଙ୍ଗରେ ଅନେକ ମଙ୍ଗଳବାସୀ କହିଉଠିଲେ—"କାହିଁକି ?"

କାରଣ ଝିଅଟି ସେହି ଯୁବକକୁ ପ୍ରେମ କରୁଥିଲା । ପ୍ରେମର ଭାବନା ଖୁବ୍ ଗଭୀର ଏବଂ ଏହାର କର୍ତ୍ତବ୍ୟ ମଧ୍ୟ ଭିନ୍ନ । ଏହି କର୍ତ୍ତବ୍ୟର ଫଳାଫଳ ଖୁବ୍ ଭୟାବହ ହୁଏ । ଏଥିରୁ ଆଉ ଏକ ପ୍ରକାର ବିଶେଷ ବାସ୍ନା ବାହାରେ । ଏହି ପ୍ରେମ ଜିନିଷଟି ହିଁ ଏମିତି । ସେଠାରେ ପୁଅ ଝିଅକୁ. ଝିଅ ପୁଅକୁ, ବନ୍ଧୁ ବନ୍ଧୁକୁ, ମା' ପୁଅକୁ, ବାପ ଝିଅକୁ, ପୁଅ ନିଜ ଦେଶକୁ । ଗୋଟିଏ ଦେଶ ଆଉ ଗୋଟିଏ ଦେଶକୁ ପ୍ରେମ କରେ । ପ୍ରେମ ସେଠାରେ କେବଳ ମଣିଷମାନଙ୍କ ମଧ୍ୟରେ ସୀମିତ ତା ନୁହେଁ । କିଏ ବଗିଚାକୁ ପ୍ରେମ କରେ ତ କିଏ ଫୁଲକୁ ପ୍ରେମ କରେ, ସବୁ ଜାଗାରେ ପ୍ରେମ ହିଁ ପ୍ରେମ । ଏହି ପ୍ରେମ ହିଁ ମଣିଷକୁ କେଉଁଠୁ ନେଇ କେଉଁଠି ପହଁଚାଇଦିଏ । ପ୍ରେମର ଅନେକ ଅନେକ ରୂପ; କିନ୍ତୁ ହୃଦୟର ପ୍ରେମର ରୂପ ସମ୍ପୂର୍ଣ୍ଣ ଅଲଗା । ଏହା ଏପରି ଏକ ନରମ ଗରମ, ଏବଂ ମଧୁର ସମ୍ପର୍କ ଯେଉଁଥିରେ କି ଗୋଟିଏ ପୁରୁଷ ଆଉ ଗୋଟିଏ ପୁରୁଷ ଆଡ଼କୁ ଟାଣିହୋଇ ଆସେ ଯେପରି ଗୋଟିଏ ଅଣୁ ଆଉ ଗୋଟିଏ ଅଣୁ ଆଡ଼କୁ ଆକର୍ଷିତ ହୋଇଥାଏ ।

କଥା କହୁ କହୁ ରିପୋର୍ଟ ପେଶ୍ କରୁଥିବା ଲୋକଟି ଚୁପ୍ ହୋଇଗଲା । ପୁଣି ହଠାତ୍ ତାକୁ ଗୋଟିଏ ବୁଦ୍ଧି ଦେଖାଗଲା । ସେ ନିଜ ପକେଟରୁ ଗୋଟିଏ ରୁମାଲ ବାହାର କରି ପ୍ରଥମେ ତାକୁ ନିଜେ ଶୁଙ୍ଘିଲା—ପୁଣି ତାକୁ ଅଧ୍ୟକ୍ଷ ମହାଶୟଙ୍କୁ ଦେଲା ଏବଂ କହିଲା—

"ଦେଖନ୍ତୁ ଏ ରୁମାଲଟି ସେହି ଝିଅଟିର, ଯିଏ ମୋତେ ପୃଥିବୀକୁ ଫେରିବା-ବେଳକୁ ସ୍ମାରକରେ ଦେଇଦେଲା··· । ସେ ଝିଅଟି ମତେ ପ୍ରେମ କରୁଥିଲା, ଦେଖନ୍ତୁ ସେଇ ଝିଅର ପ୍ରେମର ମହକ ବର୍ତ୍ତମାନ ପର୍ଯ୍ୟନ୍ତ ଏ ରୁମାଲରେ ମହଜୁଦ ଅଛି—ଆପଣ ଏହାକୁ ଶୁଙ୍ଘିପାରନ୍ତି ।"

ଅଧ୍ୟକ୍ଷ ମହୋଦୟ ରୁମାଲକୁ ନେଇ ନାକରେ ଲଗାଇଲେ । କିଛି ସମୟ-ପାଇଁ ତାଙ୍କ ଆଖି ଦୁଇଟି ଆପେ ଆପେ ବନ୍ଦହୋଇଗଲା । କିଛି ସମୟ ପରେ ସେ ଆଖି ଖୋଲି କହିଲେ—

"ଏଥିରେ ବାଦଲର ମହକ ଅଛି ।" ଅଧ୍ୟକ୍ଷ ରୁମାଲଟିକୁ ଉପାଧ୍ୟକ୍ଷଙ୍କୁ ଦେଲେ । ସେ ଶୁଙ୍ଘି କହିଲେ—"ଏଥିରେ ସ୍ୱପ୍ନର ମହକ ଅଛି ।"

ସେ ରୁମାଲଟିକୁ ନିଜ ପାଖରେ ବସିଥିବା ଅନ୍ୟ ମଙ୍ଗଳବାସୀଙ୍କୁ ଦେଲେ··· ସେ ଶୁଙ୍ଘି କହିଲା···

"ଭଲ—ଏଥିରେ ତ ଇନ୍ଦ୍ରଧନୁର ମହକ ଅଛି ।" ଚତୁର୍ଥ ଜଣେ କହିଲା—"ଏହାର ବାସ୍ନା ମତେ ମୋର ପଚ୍ଛକଥା ମନେପକାଇ ଦେଉଛି ଯେତେବେଳେ ମୋର ଦେହରେ ସୂର୍ଯ୍ୟଙ୍କର ଗୋଟିଏ ଅଂଶ ଥିଲା ।"

ରିପୋର୍ଟ ଶେଷ କରୁଥିବା ଲୋକଟି କହିଲା– "ନାସାକୁ ସୂର୍ଯ୍ୟ ଲୁହାଯାଇ-ପାରେ, ବାଦଲ ମଧ୍ୟ । ସେ ଇନ୍ଦ୍ରଧନୁ ସାଜିପାରେ, ସ୍ୱପ୍ନ ମଧ୍ୟ ସାଜିପାରେ·· ସେ ଏକ ଅପୂର୍ବ ତଥା ବିଚିତ୍ର ବସ୍ତୁ ।

ହଲରେ ଏକ ବିରାଟ ଶୂନ୍ୟତା ଖେଳିଗଲା । ଦଶମିକ୍ ଶୂନ୍ ଶୂନ୍ ଶୂନ୍ ଛନ୍ ଦୁଇର ଚେହେରା । ଏକ ଅଜବ ସ୍ୱପ୍ନ ମଧ୍ୟରେ ହଜିଗଲାପରି ଦେଖାଗଲା···କିଛି ସମୟପରେ ଅଧ୍ୟକ୍ଷ ମହୋଦୟ ଏହି ନୀରବତାକୁ ଭଙ୍ଗ କରି କହିଲେ––

"କିନ୍ତୁ ସେଠାକାର ଅନ୍ୟ ବିଷୟରେ ତମେ କିଛି କହିଲ ନାହିଁ ଯେ ?

ଦଶମିକ ଶୂନ୍ ଶୂନ୍ ଶୂନ୍ ଛନ୍ ଦୁଇର ଚେହେରା ଏ ପ୍ରଶ୍ନ ଶୁଣି ବଦଳିଗଲା ।

"ମୁଁ ବଡ଼ ଗର୍ବର ସହିତ କହିପାରେ ଯେ ପୃଥିବୀ ବାସୀଙ୍କର ହୃଦୟ ଆମ ହୃଦୟପରି ଏତେ ପୂର୍ଣ୍ଣନୁହେଁ, ଏତେ ବଡ଼ନୁହେଁ, ବୈଜ୍ଞାନିକ ମଧ୍ୟ ନୁହେଁ । ପୁଣି ପୃଥିବୀ ଉପରେ ଗୋଟିଏ ପ୍ରକାର ନିୟମ ଚଲେ ନାହିଁ, ବହୁ ନିୟମ ନେଇ ଚଳିବାକୁ ହୁଏ । କେତେକ ପୁରୁଣା ଧରାବନ୍ଧା ନିୟମ ଅଛି––ଆଉ କେତେ ଆଧୁନିକ ନିୟମ ମଧ୍ୟ ଅଛି । ସେଠାରେ ଆମ ନିୟମପରି ନିୟମ ନାହିଁ । ଆମର ଏଠି କେହି ଭୁଲ୍ କରିବାର ସମ୍ଭାବନା ନାହିଁ । କିନ୍ତୁ ସେଠି ଲୋକ ନିଜର ଜ୍ଞାନ ଏବଂ ବିଜ୍ଞାନ-କ୍ଷେତ୍ରରେ ଆମଠୁଁ ବହୁତ ପଛରେ ଅଛନ୍ତି ଏବଂ ବହୁତ ଭଲ କାମ ମଧ୍ୟ କରୁଛନ୍ତି । ଆମର ତାଙ୍କଠୁଁ କୌଣସି ବିପଦ ଆଶା କରିବା ଉଚିତ୍ ନୁହେଁ । ଏହା ହିଁ ମୋର ରିପୋର୍ଟର ସାରାଂଶ ।"

ଦଶମିକ ଶୂନ୍ ଶୂନ୍ ଶୂନ୍ ଛନ୍ ଦୁଇ ବଡ଼ ଗର୍ବରେ ନିଜର ଭାଷଣ ଶେଷ-କଲା । ହଲ୍‌ରେ ତାଳି ପରେ ତାଳି ବାଜିଉଠିଲା ।

କିନ୍ତୁ ଉକ୍ତ କାର୍ଯ୍ୟକାରୀ ସମିତିର ଅଧ୍ୟକ୍ଷଙ୍କ ମୁହଁ ରଙ୍ଗା ପଡ଼ିଯାଇଥିଲା । ସେ ନିଜ ଜାଗାରୁ ଉଠି ଉଠି ବଡ଼ ଗମ୍ଭୀର ସ୍ୱରରେ କହିଲେ—

"ମୁଁ ଆପଣମାନଙ୍କ ସାଙ୍ଗରେ ଏକମତ ନୁହେଁ । ଯଦି ମଣିଷ ଭୁଲ୍ କରିପାରେ ଏବଂ ପ୍ରେମ କରିପାରେ, ହୃଦୟ ମଧ୍ୟ ଦେଇପାରେ, ତେବେ ଆମର ଡର ସେଇଠି । ଏପରି ମଣିଷ କେତେବେଳେ ହେଲେ ମଙ୍ଗଳ ଗ୍ରହକୁ ବିଜୟ କରିପାରେ ।"



# ଅଲଫ୍ ଲଇଲା

ପ୍ରତ୍ୟେକ ମନୁଷ୍ୟର ଜୀବନରେ ଦୁଇଟି ସ୍ମରଣୀୟ ଘଟଣା ଘଟିଥାଏ । ପ୍ରଥମଟି ହେଲା, ଯେଉଁଦିନ ସେ ଏ ପୃଥିବୀରେ ଜନ୍ମ ନିଏ ଏବଂ ଦ୍ୱିତୀୟଟି ହେଲା ଯେଉଁଦିନ ସେ ପୃଥିବୀରୁ ବିଦାୟ ନିଏ । ପ୍ରଥମଟିକୁ ଘଟଣା କୁହାଯାଏ ଏବଂ ଦ୍ୱିତୀୟଟିକୁ ଦୁର୍ଘଟଣା କୁହାଯାଏ । ପ୍ରଥମ ଦିନଟିକୁ ମନୁଷ୍ୟ ସବୁବେଳେ ମନେରଖେ ଏବଂ ଦ୍ୱିତୀୟଟିକୁ ଭୁଲିବାକୁ ଚେଷ୍ଟା କରେ ।

ଏବଂ ଏହି ଦୁଇ ସ୍ମରଣୀୟ ଘଟଣା ମଝିରେ ଆହୁରି ଅନେକ ଘଟଣା ଘଟିଯାଏ ଯାହା ଭୁଲି ହୁଏ ନାହିଁ; କିନ୍ତୁ ସମୟ ଆସେ ଯେତେବେଳେ ଏସବୁକୁ ଭୁଲିବାକୁ ପଡ଼େ । ମଣିଷ ଏହାକୁ ନିଜେ ମଧ୍ୟ ଭୁଲିଯାଏ ଏବଂ ଇତିହାସ ମଧ୍ୟ ଭୁଲିଯାଏ । ଏ ମଣିଷର ଇତିହାସର କଣ ବା ଠିକଣା ? ମାନବ ଜୀବନର ମନୁଷ୍ୟଙ୍କର ଆୟୁଷ ପ୍ରାୟ ଦଶହଜାର ବର୍ଷର ପୁରୁଣା । ଏଥିପାଇଁ ସମୟର ସ୍ରୋତରେ ଭାସି ଯାଇ ଯାଇ ଅନେକ କିଛି ଘଟଣାବଳୀକୁ ଭୁଲିଯିବାକୁ ହୁଏ । ତାହାର ହିସାବ

କିଛି ନାହିଁ । କଥିତ ଅଛି, ଜଣେ ଘୋଡ଼ାସବାର କହିଥିଲା, ଦୁଇ କମ୍ପା ଅଟେଇ ଅଯୁତ ବର୍ଷରେ ଆମର ଏ ପୃଥିବୀ ଧ୍ୱଂସ ପାଇ ବାୟୁମଣ୍ଡଳରେ ମିଶିଯିବ । ସାଧାରଣ ପକ୍ଷରେ ତ ଏ ଦୁଇ ଅଟେଇ ଅଯୁତ ବର୍ଷ ତ ବହୁତ ଲମ୍ବା ସମୟ; କିନ୍ତୁ ଏ ବିରାଟ ବ୍ରହ୍ମାଣ୍ଡର ସମସ୍ୟାକୁ ଅନେଇଲେ ଅଟେଇ ଅଯୁତ ବର୍ଷ ଏକଦମ ନଗଣ୍ୟ ହୋଇଯାଏ । ଏ ବ୍ରହ୍ମାଣ୍ଡରେ ପ୍ରତି ସେକେଣ୍ଡରେ କେତେ ପୁରୁଣା ଜିନିଷ ଭାଙ୍ଗି-ଯାଉଛି ଏବଂ ନୂଆ ଜିନିଷ ଗଢ଼ାଯାଉଛି । ଦିନ ଆସିବ ଯେତେବେଳେ ଏ ପୃଥିବୀ ମଧ୍ୟ ଶୂନ୍ୟ ହୋଇଯିବ । ତେଣୁ ଘଟଣାକୁ ଭୁଲିବା ବା ନ ଭୁଲିବାର ଅର୍ଥ କଣ ? ତେବେ ଯାହା କି ଚିରଦିନ ସ୍ମରଣୀୟ ହୋଇ ରହିବ ସେହିଭଳି ଏକ ଘଟଣା ଏଠାରେ ବର୍ଣ୍ଣନା କରାଯାଇଛି । ଆପଣମାନେ ଶୁଣିପାରନ୍ତି··· ।

ମୋ ଜୀବନର ସବୁଠାରୁ ଅବିସ୍ମରଣୀୟ ଘଟଣା ଘଟିଲା ଯେଉଁଦିନ ମୁଁ 'ଅଲଫ୍ ଲଇଲା' ବହିଟିକୁ ପଢ଼ିଲି । ସେତେବେଳେ ମୁଁ ତୃତୀୟ ଶ୍ରେଣୀର ଛାତ୍ର । ମୁଁ ମୋର ଜଣେ ସାଥୀ ଘରକୁ ଖେଳିବା ପାଇଁ ଯାଇଥିଲି । ସେଠି ମୁଁ ଦେଖିଲି ମୋ ସାଙ୍ଗର ବଡ଼ଭାଇ ଗୋଟିଏ ବହିକୁ ଲୁଚାଇ ଲୁଚାଇ ତାଙ୍କ ଘର ବଗିଚାର କଦମ୍ବ ଗଛତଳେ ବସି ପଢ଼ୁଥିଲା । ଯେତେବେଳେ ଗୋପାଳଠାରୁ ମୁଁ ଏକଥା ଜାଣିଲି, ମୋର ସେ ବହିଟିକୁ ଦେଖିବା ପାଇଁ ଆଗ୍ରହ ହେଲା । ଆମେ ଦୁହେଁଯାକ କଦମ୍ବ ଗଛ ମୂଳକୁ ଗଲୁ । ମୋର ମନେ ଅଛି ଅତି ସଙ୍କୋଚରେ ମୋର ସାଙ୍ଗର ବଡ଼ଭାଇ ସେହି 'ଅଲଫ୍ ଲଇଲା' ବହିଟିର ଗୋଟିଏ ଅଧ୍ୟାୟ ପଢ଼ିବାକୁ ଅନୁମତି ଦେଲେ ।

ଏହିପରି ଭାବରେ ମୁଁ 'ଆଲ୍ଲାଉଦ୍ଦିନ ଓ ତାର ମ୍ୟାଜିକ ଲ୍ୟାମ୍ପ'ର କାହାଣୀ ପ୍ରଥମ ଥର ପଢ଼ିଥିଲି । ମୋର ଶିଶୁ ମନରେ ଏହାର କି ପ୍ରଭାବ ପଡ଼ିଲା ତାହା ମୁଁ କହି ପାରିବି ନାହିଁ । ଏହାପରେ ମୁଁ ଖେଳିବା ବୁଲିବା ଇତ୍ୟାଦି ସବୁ ଛାଡ଼ି ସେଇ କଦମ୍ବ ଗଛର ତଳେ ବସି ଦିନରାତି 'ଅଲଫ୍ ଲଇଲା'କୁ ପଢ଼ିବାରେ

ଲଗିଲି । ଏହା ମୋର ପ୍ରାସ୍ତ ହତ ଦନର ଅଭ୍ୟାସରେ ପରିଣତ ହୋଇଗଲା । ମୁଁ ମୋର ସାଙ୍ଗ ଘରକୁ ଯାଇ ସେହି ବହିଟିକୁ ପଢ଼ିବାରେ ସମସ୍ତ କଟାଉଥିଲି । ରାତହେଲେ ମୁଁ ଆମ ଘରକୁ ଫେରୁଥିଲି । ମୁଁ ସେହି ବହିଟିକୁ ପଢ଼ିଲାବେଳେ ଏତେ ତନ୍ମୟ ହୋଇଯାଉଥିଲି ଯେ ନଜକୁ ମଧ୍ୟ ଭୁଲି ଯାଉଥିଲି ।

ଗୋପାଳର ଭାଇ ମୋର ଏ ଅସମ୍ଭବ ପ୍ରକାରର ଆଗ୍ରହ ଦେଖି ସେହି ବହିଟିକୁ ମୋତେ ଉପହାର ସ୍ୱରୂପ ଦେଇଥିଲେ । ସେଦନର ସେହି ବହିଟିକୁ ପାଇବାର ଆନନ୍ଦ ମୁଁ ଆପଣମାନଙ୍କ ଆଗରେ ବର୍ଣ୍ଣନା କରିପାରିବ ନାହିଁ । ସେଦନ ଏବଂ ତାପର ଦନମାନଙ୍କରେ ମୋତେ କେତେ ଉପହାରମାନ ମିଳିଥିଲା; କନ୍ତୁ ସେସବୁ ମୋତେ ଏ ବହିଟିଠାରୁ ଅଧିକ ଆନନ୍ଦ ଦେଇପାରି ନଥିଲା । ମୋତେ ଧନ, ଜନ, ମାନ ସମ୍ମାନ ବହୁ କଛି ମିଳିଥିଲା । ମୁଁ ବହୁ ଦେଶ ବଦେଶ ବୁଲି ବହୁ ନୂଆ ଉପହାର ପାଇଥିଲି । କନ୍ତୁ ଯେପର୍ଯ୍ୟନ୍ତ ମୁଁ ବଞ୍ଚିଛି, ସେହି ଉପହାରଟିକୁ ଭୁଲିପାରିବ ନାହିଁ, ଯାହାକ ଗୋପାଳର ଭାଇ ଯାହାଙ୍କ ନାମ, ମୋର ବର୍ତ୍ତମାନ ମନେ ନାହିଁ, ମୋତେ ଉପହାର ସ୍ୱରୂପ 'ଅଲଫ୍ ଲଇଲା' ପ୍ରଦାନ କରିଥିଲେ ।

ମୋର ମନେଅଛି ମୁଁ ସେହି ଦାମୀ ଉପହାରଟିକୁ ନଜ ପିନ୍ଧା ଜାମା ଭିତରେ ଲୁଚାଇ ଘରକୁ ନେଇଯାଇଥିଲି ଏବଂ ନଜ ପଢ଼ା ଘର ଭିତରେ ଏପରି ଜାଗାରେ ଲୁଚାଇ ଦେଇଥିଲି ଯେପରିକ କାହାର ନଜର ନ ପଡ଼େ ।

ରାତରେ ସମସ୍ତେ ଶୋଇ ସାରିଲାପରେ ମୁଁ ସେଇ ବହିଟିକୁ କାଢ଼ି ଏକୁଟିଆ ପଢ଼ୁଥିଲି । ଲଣ୍ଠନ ଲଗାଇ ଏତେ ସମୟ ପଢ଼ୁଥିବା ଦେଖି ମୋର ମାଆ ବହୁତ ଖୁସିଥିଲେ । କାରଣ ସେ ଜାଣି ନ ଥିଲେ ଯେ ତାଙ୍କ ପୁଅ ଏତେ ରାତ ପର୍ଯ୍ୟନ୍ତ "ଅଲଫ୍ ଲଇଲା" ହିଁ ପଢ଼ୁଛି । ସେ ଭାବୁଥିଲେ ଯେ ତାଙ୍କ ପୁଅ ଅଙ୍କ କଷୁଛି ।

ସେମାନେ ଭାବୁଥିଲେ ଯେ ମୋପରି ଗେହ୍ଲା ପିଲାର ସବୁ ସେମିତି କିଛି ପରିବର୍ତ୍ତନ ହୋଇଛି । ମୋ ବାପା ମାଆ ଏହା ଦେଖି ଖୁବ୍ ଖୁସି ହେଉଥିଲେ ।

ଶେଷକୁ ଦିନେ ମୋ ମାଆ ଜାଣିପାରିଲେ । ସେଦିନ ରାତି ବହୁତ ହୋଇଥିଲା ଏବଂ ମୋ ରୁମ୍‌ରେ ଲଣ୍ଠନ ଜଳୁଥିଲା । ବାହାରେ ପ୍ରବଳ ଥଣ୍ଡା ଯୋଗୁ ବରଫ ପଡ଼ୁଥିଲା । ଏହା ଦେଖି ମାଆ ଖୁବ୍ ଚିନ୍ତିତ ହୋଇ ପଡ଼ିଲେ ଏବଂ ଭାବିଲେ ପୁଅ ଯଦି ଏପରି ଥଣ୍ଡାରେ ଏତେ ରାତି ପର୍ଯ୍ୟନ୍ତ ପଢ଼େ; ତେବେ ତାର ଦେହ ନିଶ୍ଚୟ ଖରାପ ହୋଇଯିବ । ମାଆ ମୋର ରୁମ୍ ଭିତରକୁ ପଶିଆସି କହିଲେ 'ଆରେ ପୁଅ, ରାତି ବହୁତ ହେଲାଣି, ବର୍ତ୍ତମାନ ପଢ଼ା ବନ୍ଦ କରି ଶୋଇପଡ଼ । ସକାଳୁ ପୁଣି ତୋର ସ୍କୁଲ ଅଛି ।' ଏଥି ଭିତରେ ମୁଁ ପଢ଼ୁଥିବା ବହିଟି ପ୍ରତି ତାଙ୍କର ଦୃଷ୍ଟି ପଡ଼ିଯାଇଥିଲା ।

ବହିଟି ଏତେ ବଡ଼ ଥିଲା ଯେ ତାକୁ ଲୁଚାଇହେଲା ନାହିଁ । ମୋର ମନେଅଛି ମୁଁ ଡରିଯାଇ 'ଅଲିଫ୍ ଲଇଲା'କୁ ନିଜ ରେଜେଇ ଭିତରେ ଲୁଚାଇଦେବା ପାଇଁ ଚେଷ୍ଟାକରି ବିଫଳ ହେଲି । ମାଆ ବହିଟିକୁ ମୋ ହାତରୁ ଝାମ୍ପିନେଲେ । ବହିର ନାଁଟିକୁ ଦେଖିବାମାତ୍ରେ ତାଙ୍କ ଚେହେରା ବଦଳିଗଲା, ଆଖିରୁ ନିଆଁ ଛୁଟିଗଲା ଏବଂ ସେ ଗର୍ଜନ କରି କହିଲେ—"ଇଏ କଣ ?"

ମୋର ଓଠ ଥରିଉଠିଲା । ମୁଁ କିଛି କହିପାରିଲି ନାହିଁ ।

"ଅଲିଫ୍ ଲଇଲା" ? ତୁ "ଅଲିଫ୍ ଲଇଲା" ପଢ଼ୁଛୁ ? ଏତେଦିନ ଧରି ତୁ ଏଇ ବହି ପଢ଼ୁଥିଲୁ ?

ମାଆଙ୍କର ରାଗ ବଢ଼ିବାରେ ଲାଗିଲା ।

ମୁଁ କିଛି କହିପାରିଲି ନାହିଁ ।

ମାଆ ସଂକ୍ଷଣ ଗ୍ରିଗିଯାଇ ପାଖ କମରାକୁ ଯାଇ ବାପାଙ୍କ ହାତରୁ ଉଠାଇ ମୋ ରୁମକୁ ଆସିଲେ ଏବଂ ସେଇ ରାଗରେ ମୋ ବାପାଙ୍କୁ କହିଲେ, "ଦେଖ ! ତୁମ ପୁଅ ଏତେବଡ଼ ଧରି କ'ଣ ପଢ଼ୁଛି ?" ମାଆ ଏପରି ଭଙ୍ଗୀରେ 'ତମ ପୁଅ' ବୋଲି କହିଲେ ଯେପରି ପୁଅ ତାଙ୍କର ନୁହେଁ କେବଳ ବାପାଙ୍କର ହିଁ ଥିଲି । ମାଆ ବାପାଙ୍କ ସ୍ନେହ ଶ୍ରଦ୍ଧାର କୁଆର ଭଟ୍ଟା ଭିତରେ ପୁଅର ସମସ୍ୟା ମଧ୍ୟ ବଦଳିଥାଏ । କେତେବେଳେ ସେ କେବଳ ବାପାଙ୍କ ପୁଅ ହୁଏ ଏବଂ କେତେବେଳେ ସେ କେବଳ ମାଆଙ୍କ ପୁଅ ହୁଏ । ଖୁବ୍ ଅଳ୍ପ ସମୟ ଆସେ ଯେତେବେଳେ ସେ ଉଭୟଙ୍କର ପୁଅ ହୋଇଥାଏ । ବାପା ବହିଟାକୁ ମାଆଙ୍କ ହାତରୁ ଛଡ଼ାଇ ନେଇ ଦେଖି ମୋ ଆଡ଼କୁ ଖୁବ୍ ଗାରଡ଼େଇ ଗୁହିଁ କହିଲେ "ସଇତାନ୍... ।" "କେବଳ ସଇତାନ ନୁହଁ ବଦମାସ ବୋଲି କୁହ ।" ମୋ ମାଆ ଖୁବ୍ ଗର୍ଜନ କରି କହିଲେ; ଏ ବୟସରେ ସେ ଏପରି କଦର୍ଯ୍ୟ ବହି ପଢ଼ିଲେ ବଡ଼ ହେଲେ ସେ କରିବ କଣ ?

ହୁଁ ' ମୋ ବାପା ରାଗରେ କେବଳ ମୁଣ୍ଡ ହଲେଇଲେ ।

ହୁଁ କଣ ? ମୋ ମାଆ କହୁଥିଲେ, "ବର୍ତ୍ତମାନ କିଛି କହୁନାହଁ, ଏତେ ଛୋଟ ପିଲା "ଅଲଫ୍ ଲଇଲା" ପଢ଼ିବ । ପାଠ ବହି ପଢ଼ିବା ନାଁ ଧରୁ ନାହିଁ । ସ୍କୁଲରେ ତା ନାଁରେ ଅନେକ ଅଭିଯୋଗ । ମିଛରେ ଖାଲି ତାର ମାଷ୍ଟ୍ରମାନେ ପଇସା ନେଉଛନ୍ତି । ଯଦି ପିଲା ଏ ବୟସରେ ପଢ଼ା ଛାଡ଼ି ଦିନ ରାତି 'ଅଲଫ୍ ଲଇଲ' ପଢ଼ିବ ତେବେ ସେ ସ୍କୁଲ୍ ପଢ଼ା କେତେବେଳେ କରିବ ।"

"ପୁରାପୁରି ତମେ ଠିକ୍ କହୁଛ "ବାପା ମାଆଙ୍କୁ କହିଲେ । ମାଆ ବିରକ୍ତ ହୋଇ ବାପାଙ୍କ ହାତରୁ ବହି ଖଣ୍ଡିକ ନେଇ ଜଳୁଥିବା ନିଆଁ ଭିତରକୁ ଫୋପାଡ଼ି-ଦେଲେ ।

ମୋର ମନେଅଛି ମୁଁ ସେଇକ୍ଷଣି ସେଇ ଜଳୁଥିବା ନିଆଁ ପାଖକୁ ଦଉଡ଼ି-ଯାଇଥିଲି । ମାଆ ମୋ ଗୋଟିଏ ହାତକୁ ଟାଣିଧରିଥିଲେ ଏବଂ ବାପା ଅନ୍ୟ ହାତଟିକୁ ଧରି ବାହାରକୁ ଘୋଷାଡ଼ି ନେଇଥିଲେ । ମୋର ସାମନାରେ ମୋର 'ଅଲଫ୍ ଲଇଲା' ପୁରାପୁରି ଜଳି ପାଉଁଶ ହୋଇଗଲା । ନୀରବରେ କାନ୍ଦିବା ଛଡ଼ା ମୋର ଉପାୟ କିଛି ନ ଥିଲା ।

କେବଳ ଯେ ହିଟ୍‌ଲର ବହି ପୋଡ଼ିଥିଲେ, ତା ନୁହେଁ । ପ୍ରତିଦିନ ଲକ୍ଷ ଲକ୍ଷ ଲୋକଙ୍କ ଘରେ ଏଭଳି ବହି ପୋଡ଼ାଯାଉଛି । ଏପରିକି ପାଦ୍ରୀ, ପଣ୍ଡିତ ଓ ମୁଲ୍ଲାମାନେ ମଧ୍ୟ ବହି ପୋଡ଼ିଥାନ୍ତି । ବାପ ମାଆମାନେ ନିଜର ଅଧିକାର ସାବ୍ୟସ୍ତ କରିବା ପାଇଁ ବହି ପୋଡ଼ିଥାନ୍ତି । ବହିରେ ସମାଜର ବିଭିନ୍ନ ସମସ୍ୟାର ଚିତ୍ରଣ ବିଭିନ୍ନ ରୂପରେ ବର୍ଣ୍ଣନା କରାଯାଇଥାଏ ଏବଂ ସେଥିପାଇଁ ଏହାର ପ୍ରକାଶନ ନିମନ୍ତେ ପ୍ରକାଶକଙ୍କ ଉପରେ କେତେଗୁଡ଼ିଏ ନିୟମ ବନ୍ଧା ଯାଇଥାଏ । ଯେପରିକି ଏହାର ପ୍ରଭାବ ପିଲାଙ୍କ ଉପରେ ନ ପଡ଼େ, ସମାଜକୁ ଏହି ବହି ଯେପରି କଳୁଷିତ ନ କରେ ଏଭଳି କିଛି କଟକଣା ଜାରି କରାଯାଇଥାଏ । ଏହା ପାଳନ ନ ହେଲେ ବହି ପୋଡ଼ାଯାଏ ଏବଂ ଦରକାର ପଡ଼ିଲେ ଲେଖକକୁ ମଧ୍ୟ ଜଳାଇ ଦେବାର ନଜିର ଅଛି ।

'ଅଲଫ୍ ଲଇଲା' 'ଜଳିଗଲା' ।

ତା ସାଙ୍ଗରେ ମୋର 'ଆଲ୍ଲାଉଦ୍ଦିନ ଏବଂ 'ସିଂଦବାଦ', 'ଦର୍କବାରି ଏବଂ ସହରଜ୍ଜା'ର ବୋତଲରେ ବନ୍ଦ ରହିଥିବା ଭୂତ, ସେ ରାଜକୁମାରୀ ଯିଏ ଉଡ଼ନ୍ତା ଖଟୁଲିରେ ବସି ଉଡ଼ୁଥିଲେ, ସବୁ ଚାଲିଗଲେ ।

'ଅଲଫ୍ ଲଇଲା' ଜଳିଗଲା । ବାପା ମାଆ ତାଙ୍କ ଶୋଇବା କୋଠରୀକୁ ଚାଲିଗଲେ । ଚତୁଃପାର୍ଶ୍ୱ ଶୂନ୍‌ଶାନ ହୋଇଗଲା । ବାହାରେ ବରଫ ପଡ଼ୁଥିଲା, ହୃଦୟରେ ଭୀଷଣ ଜ୍ୱାଳା । ମୁଁ ବହିଟିର ପୋଡ଼ା ପାଉଁଶ ଆଡ଼କୁ ନିର୍ନିମେଷ

ନୟନରେ ଗୁନ୍ଥିଥିଲି । ପ୍ରତ୍ୟେକ ଜଲନ୍ତା ପୃଷ୍ଠାରୁ ଅକ୍ଷରଗୁଡ଼ିକ ଦେଖାଯାଉଥାଏ । ସେ ଲେଖାଗୁଡ଼ିକ ମୁଁ ପଢ଼ିଯାଉଥିଲି ମତେ ଏପରି ଲାଗୁଥିଲା ଯେ ଯେପରି ମୁଁ ଧୀରେ ଧୀରେ 'ଥଲଫ୍ ଲଇଲା'ର ପ୍ରତ୍ୟେକ ପୃଷ୍ଠା ମୋ ମନରେ ଗୁନ୍ଥି ହୋଇଯାଉଛି ।

ତା ପରଦିନ ମୁଁ ସ୍କୁଲକୁ ଗଲି ନାହିଁ । ମୁଣ୍ଡ ବିନ୍ଧାର ବାହାନା କରି ଖଟ ଉପରେ ପଡ଼ି ରହିଲି । ମାଆ ମୋ ମନ ଦୁଃଖର କାରଣ ବୁଝି ସାରିଥିଲେ । ଧୀରେ ଧୀରେ ବାପା, ମାଆ ମୋ ମନ ଦୁଃଖର କାରଣ ବିଷୟରେ ଗୁପ୍ତରେ ଆଲୋଚନା କଲେ । ମୋର କେବଳ ଏତିକ ମନେଅଛି ଯେ ବାପା ମାଆ ମୋର ଇଚ୍ଛା ବିରୁଦ୍ଧରେ କିଛି କରିବାପାଇଁ ଚାହୁଁଥିଲେ ।

କିଛି ସମୟ ପରେ ମାଆ ବଜାରକୁ ଗଲେ; କିନ୍ତୁ ମତେ ଡାକଲେ ନାହିଁ । ଆଗରୁ ମାଆ ମତେ ପ୍ରାୟ ସାଙ୍ଗରେ ନିଅନ୍ତି । ସନ୍ଧ୍ୟାବେଳେ ମା ବଜାରରୁ ଫେରିଲେ ହାତରେ ତାଙ୍କର ଅନେକଗୁଡ଼ିଏ ବହି । ସେ ବହିଗୁଡ଼ିକୁ ସେ ମୋ ସାମନାରେ ରଖିଦେଲେ ଏବଂ କହିଲେ, "ଯଦି ବହି ପଢ଼ିବାକୁ ଚାହୁଁ; ତେବେ ଭଲ ବହି ପଢ଼, ଏପରି ବାଜେ ବହି ପଢ଼ିବା କଣ ଦରକାର ?" ମାଆ ମୋତେ ବଡ଼ କୋମଳ କଣ୍ଠରେ ବୁଝାଇବାକୁ ଲାଗିଲେ । 'ଦୟାନନ୍ଦ ସରସ୍ୱତୀ ଜୀବନୀ, ସଂସ୍କାର ବିଧି, ସନ୍ଧ୍ୟା ଗୀତା, ପୁଷ୍ପାଞ୍ଜଳୀ ପରି ସୁନ୍ଦର ସୁନ୍ଦର ବହି ପଢ଼ି । ପ୍ରେମପୂର୍ଣ୍ଣ ଭଜନ ଗୀତାବଳୀ ପଢ଼ି ମନକୁ ପ୍ରଫୁଲ୍ଲ କର । ନିଜକୁ ସଭ୍ୟ ମଣିଷ ରୂପେ ଗଢ଼ । ଏସବୁ ବାଜେ ବହି ପଢ଼ି ନିଜକୁ ନଷ୍ଟ କରନା ।"

ମତେ ଭଲ ମଣିଷକୁ ଘୃଣା ଲାଗୁଥିଲା । "ଧର୍ମାତ୍ମା ହେବାପାଇଁ ଭଲ ବାଳକ ହେବା ଦରକାର ମାଆ ମୋତେ ବୁଝାଉଥାନ୍ତି । ଭଲ ବାଳକ ହେଲେ ବଡ଼ ହେଲେ ତୁ ବଡ଼ ମଣିଷ ହେବୁ । ତୋ ଜୀବନ ସୁଧୁରି ଯିବ । ଆତ୍ମା ଶୁଦ୍ଧି ହେବ ତୁ ଭଗବାନଙ୍କୁ ଦେଖିପାରିବୁ ।"

ମୁଁ କିନ୍ତୁ ଖୁବ୍ ଯିଦ କଲି । ମୋର ଭଲ ମଣିଷ ହେବା ଦରକାର ନାହିଁ । ମତେ ମୋ "ଅଲିଫ୍ ଲଇଲା" ଦେଇଦିଅ । ମୁଁ କାନ୍ଦୁଥାଏ ଏବଂ କାନ୍ଦୁଥାଏ । ଏହା ଦେଖି ମାଆ ମୋତେ ଖୁବ୍ ଜୋର୍‌ରେ ଚାଟକଣାଟାଏ ମାରିଲେ, ମୋର କାନ୍ଦ ଆହୁରି ବଢ଼ିଗଲା ।

କିଛିଦିନ ପରେ ସବୁ ଶାନ୍ତ ହୋଇଗଲା । ମୁଁ ନିଜ ମନକୁ ବୁଝାଇବାକୁ ଚେଷ୍ଟାକଲି । ମା ଙ୍କ ଦ୍ୱାରା ଦିଆ ହୋଇଥିବା ବହିସବୁକୁ ପଢ଼ିବାପାଇଁ ଚେଷ୍ଟାକଲି । ଗୀତାର ଅର୍ଥ କିଛି ବୁଝିପାରିଲି ନାହିଁ । ସନ୍ଧ୍ୟା ଗୀତ ବହି ଖୋଲି ପଢ଼ିଲାବେଳକୁ ମୋର ମନେହେଲା ମୋ ସମ୍ମୁଖରେ ଏକ ବିରାଟ ପାହାଡ଼ ଠିଆ ହୋଇଛି । ଭଗବାନ ନିରାକାର, ଅାକାର ମଧ୍ୟ । ଓଁ ନାମରେ ମୋ ସାଙ୍ଗରେ ଗୋଟିଏ ପିଲା ପଢ଼ୁଥିଲା; କିନ୍ତୁ ସେ ଭଗବାନ ନୁହେଁ । ଗୀତାରେ ଓଁକାରମାନେ ଭଗବାନ । ତେଣୁ ଋଷି ସଂସାର ତ୍ୟାଗକରି ଜଙ୍ଗଲକୁ ଚାଲି ଯାଇଥିଲେ । ସେ ବୋଧହୁଏ 'ଅଲିଫ୍ ଲଇଲା' ପଢ଼ି ନଥିଲେ ପଢ଼ିଥିଲେ ସେ ସଂସାର ଛାଡ଼ି ନ ଥାନ୍ତେ ! ମନୁଷ୍ୟର ଆତ୍ମାକୁ ଶୋକ, ଶୋଷ ଲାଗେ ନାହିଁ । ତମେ ଯଦି ଆତ୍ମାର ଉନ୍ନତି ଚାହଁ; ତେବେ ସଂସାରମାୟାରେ ମୋହିତ ନ ହୋଇ ମନକୁ ତାଠାରୁ ଦୂରେଇ ଦିଅ । କିନ୍ତୁ ମୋ ମନ ତ ବହୁତ ଭଲ ଅଛି । ଫୁଟନ୍ତା ଫୁଲ, କଳ କଳ ନାଦିତ ନଦୀ, ବରଫାବୃତ ପାହାଡ଼, ସବୁଜ ପ୍ରାନ୍ତର, ମୋର ଖେଳ ସାଙ୍ଗସାଥୀ, ମୋ ପିତା ମାତାଙ୍କ ସୁକୋମଳ କୋଳ, ଫୁଟବଲ, ଲୁଚକାଳି ଖେଳ ଏବଂ ଗ୍ଲେଟ ଗ୍ଲେଟ ପୁଅ ଝିଅମାନଙ୍କ ଖେଳ, ଏସବୁ ମିଛ ଓ ମାୟା ଅଟେ । ମାୟା କଣ ଖରାପ କଥା ? ମୋ ମାୟା ମାଉସୀ ଯେତେବେଳେ ଆମ ଘରକୁ ଆସୁଥିଲେ ସେତେବେଳେ ସେ ଖୁବ୍ ସୁନ୍ଦର କାହାଣୀ ଶୁଣାଉ ଥିଲେ । ତେଣୁ ମୋତେ ମାୟା ମାଉସୀଙ୍କୁ ଖୁବ ଭଲ ଲାଗେ ।

ମୁଁ କଣ କରିବି କିଛି ଭାବି ନ ପାରିବାରୁ ପ୍ରତିଦିନ କିଛି କିଛି ପଇସା ଲୁଚେଇ ଲୁଚେଇ ରଖିବାକୁ ଆରମ୍ଭ କରିଦେଲି । ସେତେବେଳେ ପ୍ରତିଦିନ ଦୁଇ ଅଣା କରି ମିଳୁଥିଲା । ସ୍କୁଲ ବାହାରେ ମିଳୁଥିବା 'ମସଲା ଚାଟ' ପ୍ରତି ଯେତିକି ଲୋଭ, "ଅଲିଫ୍ ଲଇଲା" ପ୍ରତି ସେତିକି ଲୋଭ; କିନ୍ତୁ ମୁଁ ଖୁବ୍ କଷ୍ଟରେ ଜିଭର ଲାଳସା ଉପରେ ପଥର ଦେଇ ପଇସାକୁ ଯେଉଁ କଷ୍ଟରେ ଜମାଇଲି ତାହାକୁ

ଖଣ୍ଡିରେ ବର୍ଣ୍ଣନା କରିହେବ ନାହିଁ । ଧୀରେ ଧୀରେ ପଇସା ରଖି କେତେ ମାସ ପରେ ମୋ ନିଜ ପଇସାରେ ମୁଁ ଗୋଟେ 'ଅଲଫ୍ ଲଇଲା' କିଣିଲି । ବାଦାମୀ କାଗଜର ସୁନ୍ଦର ମଲାଟ ଉପରେ ଭୂତପ୍ରେତ, ରାଜକୁମାରୀ, ଉଡ଼ନ୍ତା ପ୍ରାସାଦ ଓ ଭୟଙ୍କର ଚିତ୍ର ସବୁ ଅଙ୍କିତ ହୋଇଥିଲା । ବହିଟି ନବ କିଶୋର ପ୍ରେସରେ ଛପା ହୋଇଥିଲା ।

ବହିଟିକୁ ମୁଁ କିଣିସାରି ପୁଣି ନେଇ ସାଙ୍ଗ ଗୋପାଳର ଘରେ ରଖିଦେଲି ଏବଂ ପ୍ରତ୍ୟେକ ଦିନ ସେଠାକୁ ଯାଇ ପଢ଼ିଲି । 'ଅଲିଫ୍ ଲଇଲା'କୁ ମୁଁ ଥରେ ନୁହେଁ, ବାରମ୍ବାର ପଢ଼ିବାକୁ ଲାଗିଲି । ସେହି ସମୟରେ ତାର ପ୍ରତ୍ୟେକ ଗପ ମୋ ହୃଦୟରେ ଖୁବ୍ ପ୍ରଭାବ ପକାଇଥିଲା ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ 'ଅଲଫ ଲଇଲା' ବଦଳରେ ଅନ୍ୟ ବହି ପଢ଼ିବା ପାଇଁ ମୋର ଆଗ୍ରହ ହେଲା । ପୁଣି ମୁଁ ଗୀତା ପଢ଼ିଲି ଏବଂ ତାର ଅର୍ଥ ବୁଝିବାକୁ ଲାଗିଲି । ତା ପରେ ପୃଥିବୀ ବିଷୟରେ ମଧ୍ୟ ପଢ଼ିଲି । ତା ସାଙ୍ଗକୁ ଅନ୍ୟାନ୍ୟ ବହି ତଥା ବିଜ୍ଞାନ ସମ୍ବନ୍ଧୀୟ, ଇତିହାସ ସମ୍ବନ୍ଧୀୟ ଏବଂ ସଙ୍ଗୀତ ସମ୍ବନ୍ଧୀୟ ବହି ସବୁ ପଢ଼ି ଧୀରେ ଧୀରେ 'ଅଲଫ ଲଇଲା'କୁ ଭୁଲିଗଲି । ଏହା ମଧ୍ୟ ସତ୍ୟ ଯେ ବାଲ୍ୟାବସ୍ଥା ପରେ ପରେ ମୁଁ ଏପର୍ଯ୍ୟନ୍ତ ଆଉ 'ଅଲଫ୍ ଲଇଲା'କୁ ପଢ଼ିନାହିଁ ।

ଜୀବନରେ ଆଉ କେବେ 'ଅଲଫ୍ ଲଇଲା'କୁ ନ ପଢ଼ିଥିଲେ ମଧ୍ୟ ମୋ ହୃଦୟରେ ତା ପାଇଁ ଟିକିଏ ସ୍ଥାନ ରହିଯାଇଥିଲା । ମୋ ଜୀବନରେ ଅଲଫ୍ ଲଇଲା'ର ସ୍ୱପ୍ନକୁ ଜୀବିତ ହେବାର ଦେଖିଛୁ । ପବନରେ ଉଡ଼ୁଥିବା ସେଇ କୋଠାଘର, ବୋତଲରେ ରହୁଥିବା ଭୂତ ଏବଂ ସଇତାନମାନଙ୍କ କଥା ଏବେ ମଧ୍ୟ ମନେପଡ଼ୁଛି । ସେ ସବୁ ସ୍ୱପ୍ନ ଜଗତର କଥା ।

ସେ ସ୍ୱପ୍ନ ଜଗତର ଦୃଢ଼ ଆଶା ବର୍ତ୍ତମାନ ସୁଦ୍ଧା ପୂର୍ଣ୍ଣ ହୋଇପାରି ନାହିଁ । ମୁଁ ସେଇ 'ଅଲଫ୍ ଲଇଲା'ର ଚକମକ ପଥରର ସନ୍ଧାନରେ ବର୍ତ୍ତମାନ ମଧ୍ୟ ଘୁରିବୁଲୁଛି; ଯାହାକି ଏ ଦୁନିଆର ଦୟନୀୟ ଅବସ୍ଥାକୁ ବଦଳାଇ ଦେଇପାରିବ ।